# ଅନନ୍ତ ସତ୍ୟ

କବି :
**ଡା଼ଃ ସାମନ୍ତରା ବିଜୟ କୁମାର ଦାସ**
ଗ୍ରାମ - ବୋଧେଇ, ପୋଷ୍ଟ - ଡଗରପଡ଼ା
ଥାନା - ତିର୍ତ୍ତୋଲ, ଜିଲ୍ଲା - ଜଗତସିଂହପୁର

*ପ୍ରକାଶକ :*
**ଚଣ୍ଡିପ୍ରସାଦ ଦାସ**
ପ୍ଲଟ୍ ନଂ. ୧୨୫/୩୫, ଲେନ୍ ନଂ.-୨
ଖଣ୍ଡଗିରିବିହାର, ପୋ.ଅ.- ଖଣ୍ଡଗିରି
ଭୁବନେଶ୍ୱର । ପିନ୍ - ୭୫୧ ୦୩୦
ଜିଲା : ଖୋର୍ଦ୍ଧା,. ଓଡ଼ିଶା

**ପ୍ରଥମ ସଂସ୍କରଣ :**
ଅଗଷ୍ଟ - ୨୦୦୬
ଜନ୍ମାଷ୍ଟମୀ
ତା ୧୫ ଅଗଷ୍ଟ ୨୦୦୬

**D.T.P. ଓ ମୁଦ୍ରଣ :**
ପ୍ରେସ୍‌ମ୍ୟାନ
ୟୁନିଟ୍ - ୪, ଭୁବନେଶ୍ୱର

ମୂଲ୍ୟ : ଟ ୫୦.୦୦

# ଅନନ୍ତ ସତ୍ୟ



କବି :

ଡାଃ ସାମନ୍ତରା ବିଜୟ କୁମାର ଦାସ

# ମତାମତ

ସାହିତ୍ୟର ଏକ ସ୍ୱର୍ଣ୍ଣକାତର ସୂକ୍ଷ୍ମତମ ବିଭାବ (Aspect) ହେଲା କାବ୍ୟ ଓ କବିତା । ତାର ନୂପୁର ଧ୍ୱନି, ଲୀଳାଇତ ଛନ୍ଦ, ଭାଷାର ଭଙ୍ଗିମା, ଶବ୍ଦର ଐନ୍ଦ୍ରଜାଲିକ ସମ୍ଭାଷଣ, ପାଠକର ହୃଦୟ ଗଭୀରତମ ପ୍ରବେଶ କରିବାକୁ ଯେତେ ସମର୍ଥ ସେପରି ସାମର୍ଥ୍ୟ କେବଳ ସଙ୍ଗୀତର ଅଛି ଓ ଥିଲା । ସଙ୍ଗୀତର ସାଙ୍ଗୀତିକତା ଓ ଗୀତଲତା ଯଦି କାବ୍ୟ ବା କବିତାରେ ଅନୁପସ୍ଥିତ ରହେ ତାହେଲେ କାବ୍ୟପାଠକ ଓ କାବ୍ୟ କେହି କାହାର ନିକଟତର ହୋଇପାରିବେ ନାହିଁ । ସାହିତ୍ୟ ଏକ ଅବିଚ୍ଛିନ୍ନ ଧାରା । ସେ ଧାରା ଜୀବନ, ମଣିଷପଣିଆକୁ ଏକ ସାମଗ୍ରୀକତା ପ୍ରଦାନ କରେ ଓ ସାରସ୍ୱତ ମୂଲ୍ୟବୋଧରେ ଅଳଙ୍କୃତ କରେ । ସାହିତ୍ୟର ସେହି ପ୍ରବହମାନ ଅବିଚ୍ଛିନ୍ନ ଧାରାକୁ ଅବକ୍ଷୟ ଆଡ଼କୁ ମୁହାଁଇ ଦେବାକୁ ଇତିହାସରେ ବହୁ ବଳଦର୍ପୀ ବାହୁବଳେନ୍ଦ୍ର ଅତ୍ୟାଚାରୀ ଶାସକମାନେ ଚେଷ୍ଟାକରି ସାମୟିକ ସଫଳତା ହାସଲ କଲେ ମଧ୍ୟ ମହାନ ସାହିତ୍ୟର ଧାରା ତାର ନିଜସ୍ୱ ଗତିପଥରେ ଆଜିବି ଦ୍ରୁତ ଧାବମାନ ।

ମଣିଷ ଉଣାଅଧିକେ ଏକ ଆବେଗମୟ ପ୍ରାଣୀ । ସବୁ ମଣିଷଙ୍କ ଦ୍ୱାରା ଆବେଗ ପଦାକୁ ଆତ୍ମପ୍ରକାଶ କରିପାରେନା । ଯେଉଁମାନଙ୍କ ଦ୍ୱାରା ସେ ଆବଗ ଜ୍ୱଳା ଭାବରେ ଆତ୍ମପ୍ରକାଶ କରେ, ସେହିମାନେ ପ୍ରତିଭାବନ୍ତ କବି, କଳାକାର, ଲେଖକ । ଏକଥା କହିବାର ତାତ୍ପର୍ଯ୍ୟ, ମୋ ପାଖରେ **'ଅନନ୍ତସତ୍ୟ'** ନାମକ ଏକ କବିତା ପୁସ୍ତକର ଡି.ଟି.ପି. ପାଣ୍ଡୁଲିପି ଧରି ଡାକ୍ତର ଶ୍ରୀଯୁକ୍ତ ସାମନ୍ତରା ବିଜୟ କୁମାର ଦାସ ଅନୋହୁତି ଉପସ୍ଥିତ ହୋଇଥିଲେ, ତାଙ୍କ ବହିରେ ମୋର କିଛି ମତାମତ ଆଶା ନେଇ ।

ମୋ ସାହିତ୍ୟର ବିଦଗ୍ଧ ପାଠକ ପାଠିକା ଜାଣନ୍ତି କୌଣସି ସାରସ୍ୱତ ସ୍ରଷ୍ଟାଙ୍କ ସୃଷ୍ଟି ଉପରେ ଲିଖିତ ମତାମତ ଦେବାପାଇଁ ସବୁବେଳେ ଅରାଜି । କାରଣ ଲେଖକ ଆଉ ପାଠକ ମଧ୍ୟରେ ସିଧାସଳଖ ଯୋଗସୂତ୍ର ସ୍ଥାପିତ ହେବା ଉଚିତ୍ ବୋଲି ମୁଁ ମନେକରୁଥିବା ଯୋଗୁଁ କୌଣସି ଭୂମିକା, ମୁଖବନ୍ଧ ଇତ୍ୟାଦି ଲେଖେନାହିଁ । କବି, ଲେଖକମାନଙ୍କ ବହିରେ ସେଇଥିପାଇଁ ମୁଁ କୌଣସି ମତାମତ ଦେବାକୁ ଅନିଚ୍ଛୁକ । କବି ବିଜୟ କୁମାର ଦାସଙ୍କ ଏହି ପାଣ୍ଡୁଲିପିରେ ଏବେ ୪୬ଟି କବିତା ସ୍ଥାନିତ ହୋଇଛି । ମୋର ଝାପ୍‌ସା ବାମ ନୟନରେ ଯବକାଚ ସାହାଯ୍ୟରେ ମୁଁ ସବୁ କବିତା ଗୁଡ଼ିକ ଉପରେ ଦୃଷ୍ଟିପାତ କରିଛି । କବିତା ଗୁଡ଼ିକର ଆଙ୍ଗୀକ ଉପରେ ଆଲୋଚନା କରିବାର ଥିଲେ ବି ମୁଁ ତାହା କରୁନାହିଁ । ମୋତେ ମୁଗ୍ଧ କରିଛି କବିଙ୍କର ଭାଷାର ସାରଲ୍ୟ, ସୁବୋଧ୍ୟ,

ସରଳ ଶବ୍ଦ ସଂଯୋଜନା, ପାରିବାରିକ ମମତ୍ୱବୋଧ, ନିଜର ଜନ୍ମଦାତ୍ରୀ ମା ବା ଜନନୀର ପଣତକାନିର ମହିମା ବର୍ଣ୍ଣନା । ଏଥିରେ ଥିବା 'ଅଝଟିଆ ପିଲା' ନାମ କବିତାଟି ପଢ଼ିଲେ ପିଲାଟିର କ୍ରନ୍ଦନ ଧ୍ୱନିର କାରଣ ନାନା ଭାବରେ ଆଖିରେ ପଡ଼େ । କବି ପଚାରିଛନ୍ତି ପିଲାଟି ଜନ୍ମ ହେଲା ପରେ କାହିଁକି କାନ୍ଦେ ? ବୋଧହୁଏ କିଛି ଅଭାବ ରହିଗଲା କି ? ସେ କାନ୍ଦିବାର କାରଣ ତାକୁ ଭୋକ ହେଉନାହିଁ ତ ! ଶାମୁକାଏ କ୍ଷୀର ତା ପାଟିରେ ଦିଅ । ତାକୁ ଯଦି ଶୀତ ହେଉଥାଏ ତାହେଲେ ଅଙ୍ଗୁଡ଼ି ନିଆଁରେ ତା ହାତ ଆଉ ପାଦ ଟିକେ ସେକିଦିଅ । ତାକୁ ପାଠ ପଢ଼ିବାପାଇଁ ଯାହାକିଛି ସରଞ୍ଜାମ ଯୋଗାଇଦିଅ । କାରଣ ଏ ଦୁନିଆଁରେ ଯେତେ ପାଠ ଅଛି ସବୁ ଯେ ତାକୁ ପଢ଼ିବାକୁ ହେବ । ପିଲାଟି କାହିଁକି ବିଷର୍ଣ୍ଣ ଦେଖାଯାଉଛି ତାକୁ ଟିକେ ପଚାରି ଆସ, କ'ଣ ତାର ଅଭାବ ରହିଗଲା ? ତାକୁ ଏ ପୃଥିବୀର ରାଜା କରିଦିଅ ନହେଲେ ସେ ଅଝଟ ହେବ । ଅଝଟିଆ ପିଲାର ଏପରି ବର୍ଣ୍ଣନା ଦେଉ ଦେଉ କବି ହୁଏତ ତାକୁ ପୃଥିବୀର ରାଜସିଂହାସନରେ ଅଭିଷିକ୍ତ କରିଛନ୍ତି, ମାତ୍ର ପିଲାଟି ରାଜଗାଦି ଛାଡ଼ି ମୁଣ୍ଡରୁ ମୁକୁଟ କାଢ଼ି ଫିଙ୍ଗିଦେଇ ଦଉଡ଼ିଲାଣି କାହିଁକି ? ଏଠାରେ ପିଲାଟିର ସନ୍ୟାସ ଗ୍ରହଣର ଚିନ୍ତା କବିଙ୍କ ମନରେ ଆସିଛି । ମାତ୍ର ସବା ଶେଷରେ ବେଦନାତୁର ହୋଇପଡ଼ି କହିଛନ୍ତି - ଜୀବନ ତମାମ ଦଉଡ଼ି ଦଉଡ଼ି ଅନେକ କଷ୍ଟ ପାଇଲାଣି ପିଲାଟି, ସେ ଟିକେ ଶାନ୍ତିରେ ଶୋଇପଡୁ । ନ ଶୋଇଲେ ସେ ରାହାଧରି ପୁଣି ଅଝଟ ହେବ । ପ୍ରଶ୍ନ ଉଠୁଛି କିଏ ଏଇ ଶିଶୁ ? କିଏ ଏଇ ଆଗାମୀ ପୃଥିବୀର ନାଗରିକ ? କଣ ଏହାର ଭବିଷ୍ୟତ ? ଯାର ସ୍ଥିତି କି ଅବଦାନ ଦେବ ଅନାଗତର ମାନବ ସମାଜ ପାଇଁ ? ଏହାର ଉତ୍ତର ସେ ସୁଧୀ ପାଠକମାନଙ୍କ ଉପରେ ନ୍ୟସ୍ତ କରିଛନ୍ତି ବୋଲି ମୋର ମନେହୁଏ ।

ପ୍ରଶ୍ନ ପରେ ପ୍ରଶ୍ନ କୁହ, କୁହ, କୁହ ପଚାରି ଚାଲିଛନ୍ତି କବି ବିଜୟ କୁମାର ଦାସ । ସେ ପଚାରିଛନ୍ତି ଗୀତ କାହିଁକି ବଦଳିଯାଏ ? ନୂଆଗୀତ କାହିଁକି ଶୁଣିବାକୁ ଭଲ ଲାଗେ ? ବୁଝି ନହେଲେ ବି ସେ ଗୀତ ଭଲଲାଗେ କାହିଁକି ? ଏଇଠି ଗୋଟିଏ ଧାଡ଼ିରେ ଅନେକ ଆଶା, ସମ୍ଭାବନା ଓ ଦୈବିକ ସନ୍ଦେଶ ଆଖିରେ ପଡ଼େ । ସେଇଟି ହେଲା - **''ଆଗକୁ ଆହୁରି ଅନେକ ଗୀତ ଶୁଣିବାକୁ ହେବ''**

ମୋଟାମୋଟି ଏ କବିତା ବହିରେ ସ୍ୱଚ୍ଛବିଷ୍ଟ ପ୍ରତିଟି କବିତା ମୃତ୍ୟୁର ପରିପନ୍ଥୀ ଓ ଜୀବନର ଜୟଗାନରେ ମୁଖର । ଏହାହିଁ ତ କବିର ପାଠକକୁ, ସମାଜକୁ, ସାମଗ୍ରିକ ମାନବ ସମାଜକୁ ଏକ କାବ୍ୟିକ ସନ୍ଦେଶ । ଆମ ସାହିତ୍ୟର ତଥାକଥିତ ମର୍ଡନ (**Modern**)ମାନେ ଏ କବିତା ଗୁଡ଼ିକୁ ହୁଏତ ଗୁରୁତ୍ୱ ନଦେଇ ପାରନ୍ତି, ମାତ୍ର ଏହା ଯେ

ଜୀବନର ଏକ ଗୁରୁତ୍ୱପୂର୍ଣ୍ଣ ଅବବୋଧ ଏଥିରେ ଜଣେ ସାହିତ୍ୟ ସମାଲୋଚକ ଭାବରେ ମୋର ସନ୍ଦେହର ଅବକାଶ ନାହିଁ ।

ସାଂପ୍ରତିକ ଓଡ଼ିଆ ସାହିତ୍ୟ ଘୋରତର ଅସୁସ୍ଥ ଥିବାବେଳେ ଏହିପରି ନବାଗତ କବିମାନଙ୍କ ଆଗମନ ଆମ ସାହିତ୍ୟକୁ ଭବିଷ୍ୟତରେ ଋଦ୍ଧିମନ୍ତ କରିବାରେ ସହାୟକ ହେବ, ଏହା ମୋର ଗଭୀର ବିଶ୍ୱାସ ।

ଏହି କବିତା ବହିଟି ତିନୋଟି ଭାଗରେ ବିଭକ୍ତ ହେଲେ ମଧ୍ୟ ଜୀବନ ଦର୍ଶନ ଭାଗଟି ମୋତେ ଅଧିକ ସ୍ପର୍ଶ କରିଛି । ପ୍ରତିଛବି ଭାଗର କବିତା ଗୁଚ୍ଛ ସ୍ୱଗୁଣେ ପ୍ରକାଶମାନ, ଶାଣିତ ଓ ସାମାଜିକ ଚେତନାଧର୍ମୀ । ଆଜିର ମଣିଷର ବାସଭୂମି ଶ୍ୟାମଳ ଗ୍ରହ ଏଇ ପୃଥିବୀ ଯେତେବେଳେ କାମଳ ରୋଗଗ୍ରସ୍ତ ତାକୁ ସୁସ୍ଥ କରିବର ଗୁରୁ ଦାୟିତ୍ୱ ହେଉଛି ପ୍ରଗତିଶୀଳ କବି, ଲେଖକ କଳାକାରମାନଙ୍କର । ସେମାନଙ୍କ ସହିତ ସାମିଲ ହୋଇ ଏ କାବ୍ୟଗ୍ରନ୍ଥର କାବ୍ୟକାର ନବ ନବ ଉନ୍ମେଷଶାଳିନୀ ଦିଗ୍‌ବଳୟ ଆଡ଼କୁ ଅଗ୍ରସର ହେବେ, ଆଉ ତାଙ୍କ କାବ୍ୟକୃତିରେ ସାଫଲ୍ୟ କରିବେ ଏହାହିଁ ମୋର କାମନା ।

କବି ରବି ସିଂ

୩୦.୦୭.୦୬

# ଦୁଇଧାଡ଼ି

ମୁଁ ଯାହା ଅନୁଭବ କରିଛି, ଯାହା ଦେଖିଛି, ତାକୁ ହିଁ ରୂପ ଦେବାକୁ ପ୍ରୟାସ କରିଛି । ମୋର ଅଭିବ୍ୟକ୍ତି ପାଠକ ହୃଦୟକୁ ଛୁଇଁ ପାରିଲେ ଶ୍ରମ ସାର୍ଥକ ହେଲା ବୋଲି ଜାଣିବି ।

ମୂଳ ଲେଖା ଗୁଡ଼ିକରୁ ପାଣ୍ଡୁଲିପି ପ୍ରସ୍ତୁତି ପାଇଁ ମୋ ଝିଅ ସ୍ମିତାଞ୍ଜଳୀ (ବେବି)ର ଭୂମିକା ପ୍ରଶଂସନୀୟ । ନିଜର ପାଠପଢ଼ା ସମୟରୁ କାଟି ଲେଖାପାଇଁ ସେ ଅନେକ ସମୟ ଏବଂ ଶ୍ରମଦାନ କରିଛି । ଯେଉଁମାନଙ୍କର ସହଯୋଗ, ଉତ୍ସାହ ଯୋଗୁ ଏହି କବିତା ପୁସ୍ତକଟି ଲୋକାର୍ପଣ ସମର୍ଥ ହେଲା, ସେଥିରେ ମୋର ପରିବାର ସଦସ୍ୟ ଶୁଭେଚ୍ଛୁ ଏବଂ ବନ୍ଧୁ ଡାକ୍ତର ଅରୁଣଚନ୍ଦ୍ର ସେଠୀଙ୍କର ଭୂମିକା ଭୁଲିବାର ନୁହେଁ ।

ଅକ୍ଷର ସଜା ତଥା ମୁଦ୍ରଣ ପାଇଁ **ନରେନ୍ଦ୍ର କୁମାର ସାହୁ (ନାରାୟଣ)** ଓ ଯୋଗାଯୋଗ ପାଇଁ **ଦିପ୍ତିକାନ୍ତର** ଆନ୍ତରିକ ସହଯୋଗ ଧନ୍ୟବାଦାର୍ହ ।

ବିନୀତ କବି

**ଡାଃ ସାମନ୍ତରା ବିଜୟ କୁମାର ଦାସ**

ତା ୦୨.୦୮.୨୦୦୬

ଫୋନ୍ : ୨୩୮୪୫୧୮

# ସୂଚୀପତ୍ର

## ପ୍ରତିଛବି



## ଭକ୍ତି ଅର୍ଘ୍ୟ



## ନିବେଦନ

# ଅନନ୍ତ ସତ୍ୟ

**କବି ଡାକ୍ତର ବିଜୟ କୁମାର ଦାସ**
ଗ୍ରାମ - ବୋଧେଇ, ପୋଷ୍ଟ - ଡଗରପଡ଼ା
ଥାନା - ତିର୍ତ୍ତୋଲ, ଜିଲ୍ଲା - ଜଗତସିଂହପୁର

*ପ୍ରକାଶକ :*
**ଚଣ୍ଡିପ୍ରସାଦ ଦାସ**
ପ୍ଲଟ୍ ନଂ. ୧୨୫/୩୫, ଲେନ୍ ନଂ.-୨
ଖଣ୍ଡଗିରିବିହାର, ପୋ.ଅ.- ଖଣ୍ଡଗିରି
ଭୁବନେଶ୍ୱର । ପିନ୍ - ୭୫୧ ୦୩୦
ଜିଲା : ଖୋର୍ଦ୍ଧା,. ଓଡ଼ିଶା

**ପ୍ରଥମ ସଂସ୍କରଣ :**
ଅଗଷ୍ଟ - ୨୦୦୬
ଜନ୍ମାଷ୍ଟମୀ
ତା ୧୫ ଅଗଷ୍ଟ ୨୦୦୬

**D.T.P. ଓ ମୁଦ୍ରଣ :**
ପ୍ରେସ୍‌ମ୍ୟାନ
ୟୁନିଟ୍ - ୪, ଭୁବନେଶ୍ୱର

ମୂଲ୍ୟ : ଟ. ୫୦.୦୦

# ସମର୍ପଣ

ଅନନ୍ତ ଶକ୍ତି ମଣ୍ଡଳ ଜଗତର ନାଥ
ନୀଳକନ୍ଦର ନିବାସୀ ଦେଖାଇବ ପଥ ।

ଅଜ୍ଞାନ ହରିବ ହରି ଦେଇ ଜ୍ଞାନାଞ୍ଜନ
ନାଶିବ ଜଗତ ଦୁଃଖ ନ ଦେଇ କଷଣ ।

ଶାନ୍ତି ମନ୍ଦାକିନୀ ନିରେ ଭିଜାଇ ଧରଣୀ
ତୋଷିବ ମହିମଣ୍ଡଳ ତରୁ ତୃଣ ପ୍ରାଣୀ ।

ଅଜ୍ଞାନୀ ଜୀବ ନ ଜାଣେ ଭଲମନ୍ଦ ଗତି
ଅନ୍ଧକାରେ ଭ୍ରମୁଥାଇ ଭବନିତି ପ୍ରତି ।

ତୁମ୍ଭେ ନ ତାରିଲେ ସ୍ୱାମୀ ଆନ କେ ତାରିବ
ତୁମ୍ଭ ଦୟା ହେଲେ ନାଥ ମୁକତି ଲଭିବ ।

ତୁମ୍ଭରି ଇଚ୍ଛାରେ ରବି ଶଶୀ ଆତଯାତ
କୃପା ଦୃଷ୍ଟି ରଖିଥିବ ପ୍ରଭୁ ଜଗନ୍ନାଥ ।

ତୁମେ ଆଶାର ସବିତା ଅମା ଅନ୍ଧକାରେ
ସମର୍ପିତ ଏ ଜୀବନ ତୁମ ଶ୍ରୀପୟରେ ।



# ମୋ ମାଆର ପଣତକାନୀ

ମୋ ମାଆର ପଣତକାନୀ
କେତେ ଲମ୍ବା ସତେ
ତା ଦେହକୁ ଢାଙ୍କିସାରି
ମୋ ପାଇଁ ବି ବଳି ପଡ଼େ
ଝାଳ ପୋଛି ଧୂଳି ଝାଡ଼ିବାକୁ ।

x x x x x x x x

ମୋ ମାଆର ପଣତକାନୀ
ମୋ ପାଇଁ ବି ବଳି ପଡ଼େ
ଶେଯଟିଏ ହୋଇ
ଭୂଇଁ ଉପରେ ଲୋଟିଯାଏ
ମୋ ଫୁଲ୍ଗୁଲା ଦେହ ଟଳି ପଡ଼େ
ସେଇ ମମତା ଶେଯରେ
ପାପୁଲିରେ ମଳି ମଳି
ମୋର ଦୁଇ ନିଦୁଆ ଆଖିକୁ ।

x x x x x x x x

ମୋ ମାଆର ପଣତକାନୀ
ମୋ ପାଇଁ ବି ବଳି ପଡ଼େ
ସୂର୍ଯ୍ୟକୁ ଉହାଡ଼ କରି
ଛତାଟିଏ ହୋଇ
ଝିପି ଝିପି ଝଡ଼ି ବରଷାରେ
ଗାଧୁଆ ତୁଠରେ ଓଦା ସରସର
ପୋଛିବାକୁ ମୋ କୁନି ଦେହକୁ ।

ମୋ ମାଆର ପଣତକାନୀ
ମୋ ପାଇଁ ବି ବଳି ପଡ଼େ
ଶୀତୁଆ ରାତିକୁ ଖାତିର୍ ନକରି
ମୁଁ ଲୁଚିଯାଏ ସେଇ
ଚେନାଏ ପଣତ ତଳେ
ଡରି ଡରି କବାଟ କଣକୁ ଶୀତ ଘୁଞ୍ଚିଯାଏ
ରାଜାପୁଅ ଗପ ଶୁଣୁ ଶୁଣୁ
ନିଦ ମାଡ଼ି ଆସେ ।

x x x x x x x x

ମୋ ମାଆର ପଣତକାନୀ
ମୋ ପାଇଁ ବି ବଳି ପଡ଼େ
କଇଁ କଇଁ କାନ୍ଦି ଲୁହ ପୋଛିବାକୁ
ନିଜକୁ ସମ୍ଭାଳି ରଖିବାକୁ
ମୋ ମାଆର ଅନ୍ତିମ ଶେଯରେ
ଯାବୁଡ଼ି ଧରିବାକୁ ଶେଷଥର ପାଇଁ
ମମତାର ସେଇ ଶେଷ ସନ୍ତକକୁ ।



# ବୟସର ଗୀତ

ମୋ ନାତି ଲୋରୀ ଶୁଣିବାକୁ ଭଲପାଏ ।
ନାନା ବାଇଆର ଗୀତ ଝୁଉଲୁ ହାତୀର ଗୀତ
ଧୂଅରେ ବାଇଆ ଗୀତ ଶୁଣୁ ଶୁଣୁ
ତା ଆଈ କୋଳରେ ଆଖିବୁଜି ଶୋଇପଡ଼େ ।

କ'ଣ ବୁଝେ ସେ ଏ ଗୀତରୁ ?
ନା ଦେଖିଚି କେବେ ସେ ନାନା ବାଇଆକୁ
ନା ଦେଖିଛି କେଭେ ଝୁଲୁଥିବା ହାତୀକୁ ।

ଅବୋଧ ସେ ଧୂଅରେ ବାଇଆ ଗୀତ ।
ନା ବୁଝିଛି ସେ ଗୀତକୁ ମୋ ନାତି
ନା ବୁଝିଛି ସେ ଗୀତ ବୋଲୁଥିବା ଆଈ ।

ମୁଁ ବି ବୁଝିପାରେନା ସେ ଗୀତକୁ ।
କେଜାଣି କେଉଁ କାଳରୁ ସେ ଗୀତ
ଆଈ ମା ଗାଉଛି ତା ନାତି ନାତୁଣୀଙ୍କ ପାଇଁ ।

ସେ ଗୀତରେ କି କୁହୁକ ଅଛି କେଜାଣି
ଅଝଟିଆ କଅଁଳା ପିଲାକୁ ଶୁଆଇ ପକାଏ ।

କିନ୍ତୁ ବୟସ ବଢ଼ିଲେ ସେ ଗୀତରେ ନିଦ ହୁଏନା ।
ଲୋରୀ ଆଉ ଭଲ ଲାଗେନା ।
ମନ ଖୋଜେ ଚୂଆ ଗୀତ, ପରୀରାଣୀ ଗୀତ
ପକ୍ଷୀରାଜ ଘୋଡ଼ା ରାଜାପୁଅ ଗୀତ ।

ଗୀତ କାହିଁକି ବଦଳିଯାଏ ?
ନୂଆ ଗୀତ କାହିଁକି ଶୁଣିବାକୁ ଭଲଲାଗେ ?
ବୁଝି ନହେଲେ ବି ସେ ଗୀତ ଭଲଲାଗେ ।
ଆଗକୁ ଆହୁରି ଅନେକ ଗୀତ ଶୁଣିବାକୁ ହେବ ।

ବୁଝିହେଉ ବା ନବୁଝି ହେଉ
କାରଣ ସେ ଗୀତ, ମଣିଷର ଗୀତ
ଜୀବନର ଗୀତ, ବୟସର ଗୀତ ।



# ଉଠିଲ ଏଡ଼େ ବେଗି କାହିଁକି ?

ସେତେବେଳେ ସକାଳ ହୁଏ
ଖଣ୍ଡିକାଶ ମାରି ଜେଜେବାପା ଯେତେବେଳେ ବିଛଣା ଛାଡ଼ନ୍ତି ।
ଦାଣ୍ଡ କବାଟ କେଁ କେଁ ଶବ୍ଦ କରି ଖୋଲିଯାଏ ।
ଠକ୍ ଠକ୍ କଠଉ ମାଡ଼ି ଜେଜେ ବାପା
ପାହାଚରୁ ଓହ୍ଲାଇ ଯାଆନ୍ତି ଦାଣ୍ଡ ମଝିକୁ ।
ଗନ୍ତବ୍ୟ ସ୍ଥଳ ତାଙ୍କର ତୁଆକୂଳ ପୋଖରୀ ତୁଠ ।
ପୋଖରୀରୁ କଳସୀରେ ପାଣି ଆଣୁଥିବା
ନେତି ମା ନାକି ଓଢ଼ଣା ଟାଣି
ବାଡ଼ କଡ଼କୁ ଘୁଞ୍ଚିଯାଏ
ଜେଜେ ବାପା ତାର କାଳେ ମାନ୍ୟ ଲୋକ ।

x x x x x x x x

ପୂରୁବ ଆକାଶ ରଙ୍ଗ ବଦଳାଏ ।
ନାଲି ରଙ୍ଗ ଛାଡ଼ି ହଳଦିଆ ହୁଏ ।
ବାଉଁଶ ବୁଦାରୁ ଡେଣା ମେଲାଇ କୁମ୍ଭାଟୁଆ
ଭୂଇଁ ଉପରକୁ ଝୁଲି ପଡ଼େ ।
ଘାସ ବୁଦାରେ ଲୁଚି ଯାଉଥିବା କଲକତରାକୁ
ଟପ୍ କରି ଗିଳିଦିଏ ।
ସକାଳର ପ୍ରଥମ ଜଳଖିଆ ।
ରାତିରେ ରାସ୍ତା ପାର ହୋଇଥିବା
ସରୀସୃପଟିର ବାଲିର ଘୋଷରା ଦାଗକୁ
ଆମେ ସବୁ ପରଖି ନିରେଖି ଦେଖୁ ।

x x x x x x x x

ମୋ ପୋଷା କୁକୁର ବାଘା ଓ ଟିପୁ
ଖେଦି ଗୋଡ଼ାନ୍ତି କୋକିଶିଆଳୀକୁ ।
ବଣବୁଦା ଛାଡ଼ି ସେ କାହିଁକି ଗାଁକୁ ଆସିଛି ।
ହଳଦିଆ ରଙ୍ଗ ଛାଡ଼ି ଆକାଶ ଧଳାରଙ୍ଗ ହୁଏ ।
ପୋଖରୀ ତୁଠରୁ ଉଠୁଥିବା ଜେଜେ
ଆଣ୍ଠୁଠିରେ ମୋଡ଼ି ମୋଡ଼ି
ଧୋତି କୁଞ୍ଚ ସଳଖନ୍ତି ।
କାଶିଆ, ଫକୀରା ବଳଦକୁ ଖୋଇ
ବିଲକୁ ହଳ ସଜାଡ଼ନ୍ତି ।

x x x x x x x x

କ'ଣ ପାଇଁ ଏ ସବୁ ନିତିଦିନିଆଁ କାମ ?
ବହି ବସ୍ତାନି ଧରି ସ୍କୁଲକୁ ଯିବାକୁ ହେବ ।
ବୁଢ଼ା ଅବଧାନ ଆଖି ତରାଟି
ପଣିକିଆ ଗାଇବାକୁ ତାଗିଦ୍ କରିବ ।
ଜେଜେ ତୁମେ ସକାଳୁ କାହିଁକି କାଶିଲ ?
ତୁମରି ଖଣ୍ଡିକାଶରେ ସୂର୍ଯ୍ୟର ନିଦ ଭାଙ୍ଗିଗଲା ।
ସମସ୍ତେ ଚଳଚଞ୍ଚଳ ହେଲେ, ଏ ଗାଁ ଟା ବି ।
ଆଉ ଟିକିଏ ଡେରିଯାଏ ଶୋଇଥିଲେ କ'ଣ ଚଳିନଥାନ୍ତା
ଜେଜେ ତୁମେ ଏଡ଼େ ବେଗି କାହିଁକି ଉଠିଲ ?



# ହଜିଲା ଦିନ

କିଏ ମୋତେ ଆଣିଦବ ମୋଓ ପିଲାଦିନ
ଦାଣ୍ଡ ଧୂଳି ଖେଳ ଆଉ ହଜିଲା ସପନ ।
କିଏ ମୋତେ ଆଣିଦବ ମୋ ପିଲାଦିନ...

ମାଆର ପଣତ କାନୀ ତାତା ମାମା ବୋଲି
ପାକୁଆ ପାଟିରେ ମୋର ହସ ଖିଲି ଖିଲି
କୁନି କୁନି ସଢ଼େଇର ଭାତ ତରକାରୀ
ଧୂଳିଘର ମୋ କଣ୍ଢେଇ ପାଲିଙ୍କି ସବାରୀ ।
କିଏ ମୋତେ ଆଣିଦେବ ମୋ ପିଲାଦିନ ...

ଝୁଲଲୁ ହାତୀର ଗୀତ ବାପା ବୋଉକୋଳ
ସାଧବ ବୋହୂର ଖେଳ ସାଙ୍ଗ ସାଥି ମେଳ ।
ବୁଢ଼ା ଅବଧାନ ଆଉ ବେତ ବାଡ଼ି ଛାଟ
ଦୁଆତ କଲମ ଖଡ଼ି ମୋ କୁନି ସିଲଟ
କିଏ ମୋତେ ଆଣିଦେବ ମୋ ପିଲାଦିନ...

କାଗଜ ବୋଇତ ମୋର ଦାଣ୍ଡ ଓଳି ପାଣି
କିଏ ସତେ ଦବ ମୋତେ ଆଉଥରେ ଆଣି ।
ଧୂଳିର ସଂସାର ମୋର ଧୂଳିର ଦୁନିଆଁ
ଦେଖୁ ଦେଖୁ ହଜିଗଲା କେତେ ଦୂରେ ଆହା ।
କିଏ ମୋତେ ଆଣିଦେବ ମୋ ପିଲାଦିନ ... ।



# ଅଝଟିଆ ପିଲା

ଶିଶୁଟି ଭୂମିଷ୍ଠ ହେବାପରେ କାହିଁକି କାନ୍ଦେ ?
ବୋଧହୁଏ ତାର ଏଠି କିଛି ଅଭାବ ରହିଗଲା
ତାକୁ ତୁମେ ଏ ଅଭାବ ଦୁନିଆକୁ କାହିଁକି ଆଣିଲ
ସିଏ ଏଠି ରାହାଧରି ଅଝଟ କରୁଛି ।

x x x x x x x x

ଭୋକରେ ତାର ପେଟ ଜଳୁନାହିଁ ତ ?
ଶାମୁକାଏ ଖିର ତା ପାଟିରେ ଦିଅ
ହୁଏତ ତାକୁ ଶୀତ ହେଉଥିବ
ଅନ୍ତୁଡ଼ି ନିଆଁରେ ତା ହାତ ପାଦ ଟିକିଏ ସେକିଦିଅ ଭଲା
ନହେଲେ କିଛି ରୋଗ ହୋଇଥିବ
ଔଷଧ ଟିକିଏ ତାକୁ ଆଣିଦିଅ
ନହେଲେ ସେ ରାହାଧରି ଅଝଟ କରିବ... ।

x x x x x x x x

ସେତ କାଲି ସ୍କୁଲକୁ ଯିବ ପାଠ ପଢ଼ିବାକୁ
ଏ ଦୁନିଆଁରେ ସତେ କେତେ ପାଠ ଅଛି ?
ସବୁତ ତାକୁ ପଢ଼ିବାକୁ ହେବ
ହଁ ହଁ ଏ ଦୁନିଆଁରେ ଯେତେ ପାଠ ଅଛି
ସବୁ ଯେ ତାକୁ ପଢ଼ିବାକୁ ହେବ
ତା' ପାଇଁ ପ୍ୟାଣ୍ଟ ସାର୍ଟ ଛତା ଯୋତା
ସିଲଟ ଓ ବହିଖାତା ସବୁ ନେଇ ଆସ
ନହେଲେ ସେ ରାହାଧରି ଅଝଟ କରିବ ।

x x x x x x x x

ଏତେବଡ଼ ଦୁନିଆଁରେ ସେ ଏକା ଏକା ବଞ୍ଚିବ କେମିତି ?
ତା' ପାଇଁ କଣ ସାଥିଟିଏ ଖୋଜିଦେବ ନାହିଁ
ହଁ ହଁ ତା ପାଇଁ କଣ ସାଥିଟିଏ ଖୋଜିଦେବ ନାହିଁ
ସେତ ଭାରି ଅଝଟିଆ କଅଁଳା ପିଲା
ତା' ପାଇଁ କୋଠାବାଡ଼ି ତୋଳିଦିଅ
ଗାଡ଼ିଘୋଡ଼ା କିଣିଦିଅ, ଦାସଦାସୀ ଖଞ୍ଜିଦିଅ
କଳକାରଖାନା ଅଥବା ଜାହାଜ ଆଣି ତାକୁ ଦିଅ
ନହେଲେ ସେ ରାହାଧରି ଅଝଟ କରିବ ।

X X X X X X X X

ଭଲକରି ତାକୁ ଟିକିଏ ପଚାରି ଆସ
ତଥାପି ସେ କାହିଁକି ବିଷର୍ଣ୍ଣ ଦିଶୁଛି
ତାର ବୋଧେ ଆଉ କିଛି ଅଭାବ ରହିଗଲା
ହୁଏତ ସେ ରାଜା ହେବାକୁ ଚାହୁଁଛି
ତେବେ ତାକୁ ଏ ପୃଥିବୀର ରାଜା କରିଦିଅ
ନହେଲେ ସେ ରାହାଧରି ଅଝଟ କରିବ ।

X X X X X X X X

କିନ୍ତୁ ହେଇ ଦେଖ ଦେଖ ରାଜଗାଦି ଛାଡ଼ି
ମୁକୁଟ ଫୋପାଡ଼ିଦେଇ ସେ କାହିଁକି ଦଉଡ଼ିଲାଣି
ବୋଧହୁଏ ସେ ସନ୍ୟାସୀ ହେବାକୁ ଚାହୁଁଛି
ଗେରୁଆ ବସ୍ତ୍ର ଚିମୁଟା ଓ କମଣ୍ଡଲୁ ତାକୁ ଦେଇ ଆସ
କିନ୍ତୁ ହେଇ ଦେଖ ସେ ସବୁକୁ ମଧ୍ୟ ଫିଙ୍ଗିଦେଇ
ସେ କାହିଁକି ମଶାଣୀ ପଦାକୁ ଧାଉଁଛି
ହୁଏତ ନିଜ ପାଇଁ ସେ ସେଠି ଘୁଇ ସଜାଡ଼ିବ
ତୁମେ ତା ପାଇଁ ଟିକେ ଘୁଇଟା ସଜାଡ଼ି ଦିଅନା
ଜୀବନରେ ଦଉଡ଼ି ଦଉଡ଼ି ଅନେକ କଷ୍ଟ ପାଇଲାଣି
ବିଚରା ଶାନ୍ତିରେ ଟିକିଏ ଶୋଇପଡୁ
ନହେଲେ ସେ ରାହାଧରି ଅଝଟ କରିବ ।



# ଜୀବନ ସରଣୀ

ଜୀବନଟା ଏକ ସତ କାହାଣୀ

ରାସ୍ତା ଏଠି ଖାଲି ଅଙ୍କାବଙ୍କା

ସାଥୀ ଖୋଜି ଖୋଜି ଅଟକି ଯାଅନା

ଚାଲିବାକୁ ଶିଖ ଏକା ଏକା ।

ଜୀବନଟା ଏକ ସତ କାହାଣୀ... ।

ଏଇ ରାସ୍ତାରେ କଣ୍ଟା ଅଛି

କେଉଁଠି ଝରୁଛି କୃଷ୍ଣଚୂଡ଼ା

ଧୂସର ତାତିଲା ବାଲି କାହିଁ

ଘାସର ଗାଲିଚା ରଙ୍ଗଭରା

ହସର ଜୁଆର ଏଠି ଲୁହର ବନ୍ୟା ।

ଜୀବନଟା ଏକ ସତ କାହାଣୀ... ।

ପରାଜୟର ଗ୍ଲାନି ଅଛି

ଅର୍ଘ୍ୟର ଥାଳୀ ବିଜୟ ଟୀକା

ବିରହର ଅଛି ନିଦାଘ ତୃଷା

ମିଳନର ଏଠି ଶ୍ରାବଣୀ ଧାରା

ଜନମ ସକାଳ ଏଠି ମରଣ ସନ୍ଧ୍ୟା ।

ଜୀବନଟା ଏକ ସତ କାହାଣୀ... ।



# ଚାଖଣ୍ଡେ ପେଟ

ବସି ବସି ଦିନେ ଭାବିଲି ମନେ
କେତେଦିନ ଆଉ ଅଭାବେ ବଞ୍ଚିବି ଏହି ଜୀବନେ
ପୂଜିବି ଦିଅଁ
ତାଙ୍କ ପରସାଦୁ ଦୁଃଖ ଦୂର ହେବ ଶୁଖିବ ଲୁହ ।

X X X X X X X X

ମଠାଲୁଗା ପିନ୍ଧି ଚାଦର ପକାଇ ହେଲି ବାହାର
ଭକତଙ୍କ ଧାଡ଼ି ଦିଅଁଙ୍କ ଦୁଆରେ କେତେ ଯେ ଦୂର
ରଙ୍ଗ ଲୁଗା ପିନ୍ଧି ଦିଶୁଥିଲେ ସତେ କେଡ଼େ ବଢ଼ିଆ
କଦଳୀ ଦୁଇଟା ଗଣ୍ଡାଏ ଫୁଲ
କାହା ଡାଲାରେ ବା ଗୋଟେ ନଡ଼ିଆ
କିନ୍ତୁ ଘରଣୀ ଆମର ଭାରି ଜାଣିବାର
ମନ୍ଦାର ମାଳକୁ ଲଡୁ ମାଳପୁଆ ନବାତ ପୁଳି
ଭରି ଦେଇଛନ୍ତି ପିତ୍ତଳ ଡାଲାରେ ଯତନ କରି
ଭାବିଲି ମନେ
ପୂଜାରୀକୁ ଟିକେ ହାତ କରିଦେଲେ
ଚଉବର୍ଗ ଫଳ ମା' ଯାଚିଦେବେ ହରଷ ମନେ ।
ସତକୁ ସତ ଯେ ସେଇଆ ହେଲା
କେମିତି କେଜାଣି ପୂଜାରୀ ପୂଜିଲେ
ଅତି ସରାଗରେ ମା' ଡାକି ମୋତେ କହିଲେ କାନେ
ଚିନ୍ତା ଦୂରକରି, ହରଷ ମନେ ତୁ ଘରକୁ ଯାଆ
ଅଗଲା ରାତିକୁ ଘର ଭରିଦେବି ନିଦକେ ଥାଆ ।
ପାହାନ୍ତି ରାତିକୁ ଦୁଆରେ ଲାଗିଲା ମଟର ଗାଡ଼ି
ଗୋଟାଏ ନୁହେଁ କି ଦୁଇଟା ନୁହେଁ
ଦଶଟା ଟ୍ରଅକ ଦରବ ଆସିଛି ଧାଡ଼ିକି ଧାଡ଼ି ।

x x x x x x x x

ଏସବୁ ଆସିଛି ତମରି ପାଇଁ
ଖାଇପିଇ ଶାନ୍ତି ଆନନ୍ଦେ ଥାଅ
ଭିକାରୀ ଗୁଡ଼ାକ ମରିବା ଲୋକ
ମରନ୍ତୁ ସବୁ, ଦିଅଁ ଦେବୀ ପୂଜା ଜାଣନ୍ତି ନାହିଁ
ସବୁ ଦରବକୁ ରଖିଲି ଘରେ
କେଜାଣି କାହିଁକି ନିଦ ହେଉନାହିଁ
ସାରା ରାତି ଘରେ ଠେଙ୍ଗାଟାଏ ଧରି ପହରା କରେ ।

x x x x x x x x

ଭିକାରୀ ଗୁଡ଼ାକ ମେଳିବାନ୍ଧି କାଲେ ମାଗିବେ ଆସି
ନଦେଲେ ତ ତାଙ୍କୁ, ଧସେଇ ଘରକୁ ଆସିବେ ପଶି
ବାଣ୍ଟିଦେଲେ ଖାଲି ହେବ ମୋ ଅଣ୍ଟି
ନଦେଲେ ଚିପିବେ ଏକାବେଳେ ଆସି ମୋହରି ତଣ୍ଟି
ଧନ ମୋ ନଥିଲା, ନିରିଧନ ଥିଲି ଭଲରେ ଥିଲି
ବର ମାଗି ପ୍ରଭୁ ଭାବୁଛି ସତେ ମୁଁ କି ଭୁଲ କଲି
ଲୋଡ଼ା ନାହିଁ ମୋର, ଚାଖଣ୍ଡେ ପେଟକୁ ଏତେ ଦରବ
ନେଇ ବାଣ୍ଟିଦିଅ ତୁମେ ଦେଇଥିବା ଧନ ସରବ
ପାତର ନକରି ସମାନ ବାଣ୍ଟିବ ସଭିଙ୍କ ମେଳେ
ଫୁଟି ଉଠୁ ହସ ସଭିଙ୍କ ମୁହଁରେ ଥାଆନ୍ତୁ ଜଗତ ଜନ କୁଶଳେ ।



# ଜୀବନର ସାର୍ଥକତା

ଦିନ ଦ୍ୱିପ୍ରହରରେ ମୁଁ ଖୋଜୁଛି ଉଷାର ରକ୍ତିମ ଆଭା ।
କ୍ଷୁଧାର୍ଥ ପକ୍ଷୀର ବିଦ୍ରୋହ କାକଳୀ
ନବବଧୂଟିର ବ୍ୟସ୍ତ ଚଞ୍ଚଳ ପାଉଁଜିର ଶବ୍ଦ
ଘସର୍ ଘସର୍ ପହଁରା ସାଙ୍ଗକୁ
ଝୁମୁରୁ ଝୁମୁରୁ ହାତରେ ଶଙ୍ଖା
ରାଗ ସଂଗୀତର ଅପୂର୍ବ ସଂଗମ
ଦିନ ଦ୍ୱିପ୍ରହରରେ ମୁଁ ଖୋଜୁଛି ଉଷାର ରକ୍ତିମ ଆଭା ।

x x x x x x x x

ମୋର ଶୈଶବର ସାଥୀମାନେ
ସୁଦାମ, ଶୁବଳ, ବେଙ୍ଗା, କାଙ୍ଗାଳିଆ

x x x x x x x x

ସୁଦାମଟା ଯୋଗୀ ହୋଇଗଲା
କେଉଁ ଏକ ଆଶ୍ରମରେ ସାଧନା କରୁଛି
ଶୁବଳ ଏ ସାଲ ମାଟି କୁସ୍ତିକରି
ଏସିଆଡ୍ ପଦକ ଜିଣିଛି
ବେଙ୍ଗାଟାତ ବେଙ୍ଗା ହୋଇଗଲା
ସକାଳରୁ ସଞ୍ଜ ଯାଏ ମୁଠାଏ ପଖାଳ ପାଇଁ ସଂଗ୍ରାମ କରୁଛି

କପାଳିଆ କାଲେ କାଙ୍ଗାଳିଆ
ଯେତେସବୁ ପେଁଚ ପାଞ୍ଚକରି ମନ୍ତ୍ରୀ ହୋଇଗଲା
ଥାଟବାଟ ସାଥେ ଧରି ଗାଡ଼ିରେ ଯାଉଛି
ସଭାସମିତିରେ ଖାଲି ଭାଷଣ ଦେଉଛି

ସବୁ କରିଦେବ ବୋଲି ସଭିଙ୍କୁ କହୁଛି
ଖାଲି ଟିକେ ନାଲି, ନେଳୀ ଫାଇଲି ପିଉଛି

x x x x x x x x

କିନ୍ତୁ ଆଜି ଦିନ ଦ୍ୱିପ୍ରହରରେ ମୁଁ ଖୋଜୁଛି ଉଷାର ରକ୍ତିମ ଆଭା
ଜୀବନର ସାର୍ଥକତା କେଉଁଠି ଲୁଚିଛି କେଉଁ ପାହାଚରେ ?



# ରାକ୍ଷୀ

କାରଗିଲ୍‌ରେ କମାଣ ଗର୍ଜିଲା
ବରଫର କାନ୍‌ଭାସରେ, ନାଲିରଙ୍ଗେ ଚିତ୍ର ଅଙ୍କାହେଲା
କିଏସେ କହିଲା ଏକ ଶତ୍ରୁ ସୈନ୍ୟ ନିପାତ ହେଲା
କିଏବା କହିଲା ଏକ ବୀର ସୈନିକ ଶହୀଦ ହେଲେ
କିଛି ଫରକ ପଡ଼ିଲାନି
ଖାଲି ଗୋଟିଏ କଫିନ୍ କାମରେ ଲାଗିଲା
ସେଇ କଫିନ୍‌ରେ ଶୋଇ ତିନିରଙ୍ଗିଆ ଚଦର ତଳେ
ଉଡ଼ାଜାହାଜରେ ନେଡେରା ହାବିଲଦାର ଗାଁକୁ ଫେରିଲା
ବିମାନ ଘାଟିରେ ମୁଖ୍ୟମନ୍ତ୍ରୀ ଫୁଲମାଳ ଦେଲେ
ଗୁଡୁମ୍ ଗୁଡୁମ୍ ତୋପ ସଲାମୀରେ ଆକାଶ କମ୍ପିଲା
ଗାଁ ଦାଣ୍ଡରେ ଗାଡ଼ିମଟର, ମଣିଷର ସୁଅ
ନେଡେରା ହାବିଲଦାର ଶହୀଦ ହେଲା
ବଡ଼ପାଟିରେ ହରିବୋଲ ଦିଅ ହୁଳହୁଳି ଦିଅ
ହୁହୁ ଚିତା ଜଳୁଛି
ନେଡେରା ହାଡ଼ ମାଉଁସ ପାଉଁଶ ହେଉଛି ।

x x x x x x x x

ସୁମତୀ ଭାବୁଛି ନେଡେରା କୁଆଡ଼େ ଗଲା
ଚୁନା ମୁନା ବୁଝି ପାରିଲେନି
ତାଙ୍କ ଘରେ କାହିଁକି ଆଜି ଏତେ ଲୋକ
ମା' ହାତରୁ କାହିଁକି କାଚ କଢ଼ାଗଲା ?
ନାଲି ଟହଟହ ସିନ୍ଦୁର ମଥାରୁ କାହିଁକି ପୋଛାହେଲା ?
ମା'ର ମୁହଁଟା କାହିଁକି ଏମିତି ଦିଶୁଛି ?
ସିଏ କାହିଁକି ରଡ଼ିଛାଡ଼ି ଭୂଇଁରେ ଗଡ଼ୁଛି ?
ସେମାନେତ ଏମିତି ରଡ଼ିଛାଡ଼ି ଭୂଇଁରେ ଗଡ଼ନ୍ତି
ଆଇସକ୍ରିମ୍ ଓ ଚକୋଲେଟ୍ ପାଇଁ

x x x x x x x x

ଧୋବଧାଉଳିଆ ବାବୁମାନେ କାହିଁକି ଆସିଲେଣି ?
ମା'କୁ କ'ଣ ଖଣ୍ଡେ କାଗଜ ଦେଉଛନ୍ତି
କହୁଛନ୍ତି ଲେଖିଦେବାକୁ ସେଥିରେ ତାର ନାଁ
ପାଖଲୋକ ଚୁପୁରୁଚାପୁରୁ ହେଲେ
ଦଶଲକ୍ଷ ଟଙ୍କା କାଳେ ଆମକୁ ମିଳିବ

x x x x x x x x

କିନ୍ତୁ ସୁମତୀ କହିଲା
ଟଙ୍କାରେ ନେତେରାକୁ ବିକି ହବନି ବାବୁ
ମୋ ଛୋଟକଥା ମାନ
ଏ ଟଙ୍କାକୁ ନେଇଯାଅ, ରାକ୍ଷୀ କିଣିଦେବ -
ଯୁଦ୍ଧଖୋର ସେଇ ମଣିଷମାନଙ୍କୁ ବାଣ୍ଟିଦେବ
ତାଙ୍କୁ କହିବ, ସୁମତୀ ଭଉଣୀ ପଠାଇଛି ରାକ୍ଷୀ
ପରସ୍ପର ମିଳିମିଶି ହାତରେ ବାନ୍ଧିବ
ଛାତିରେ ଛାତି ମିଶାଇ କୋଳାକୋଳି ହେବ ।



# ହେ ସମୟ !

ହେ ସମୟ ! ତୁମେ ଟିକେ ଅପେକ୍ଷା କର
ରାତି ପାହିଲେ ମୋ ସ୍ୱାମୀଙ୍କର ମୃତ୍ୟୁ ହେବ ।
ଆଉ ଲକ୍ଷ୍ମଣର ବି
ତୁମେ କାହିଁକି ଅବାଧ ଶିଶୁଟି ଭଳି
ଆଗକୁ ଆଗକୁ ମାଡ଼ିଚାଲ
ଅନେକ ପ୍ରଶ୍ନବାଚୀକୁ ପଛରେ ପକାଇ
ବର୍ଷ ଏଠି ମୁହୂର୍ତ୍ତ ପାଲଟିଯାଏ
ମୁହୂର୍ତ୍ତ ବି ଆଉ କିଛି
ସକାଳ ପାଇଟି ସରୁ ନ ସରୁଣୁ ସଞ୍ଜ ଘଣ୍ଟି ବାଜେ ।
ହେ ସମୟ ତୁମେ ଟିକେ ଅପେକ୍ଷା କର ।

x x x x x x x x

ହାତରେ ମୋର ଔଷଧ ଓ ପଥି
ଘରେ ମୋର ରୋଗୀଣା ପିଲା
ସମ୍ମୁଖେ ମୋର ବଢ଼ିଲା ନଈ
ସନ୍ଧ୍ୟା ଆଗତ ପ୍ରାୟ
ଆର କୂଳରେ ନାଉରୀ ବିହୀନ ନାଆ
ହେ ସମୟ ! ତୁମେ ଟିକେ ଅପେକ୍ଷା କର ।

x x x x x x x x

ଜରା ଆଉ ବ୍ୟାଧିଗ୍ରସ୍ତ ମୁଁ କ୍ଳାନ୍ତ ଗୃହସ୍ଥ
ଘରେ ମୋର ଅଭିଆଡ଼ୀ କନ୍ୟା
ଝରକା ଫାଙ୍କରେ ଲତା ଉହାଡ଼ରେ
ବିତି ଯାଇଥିବା ବସନ୍ତ କେଇଟିର ହିସାବ କରୁଛି
ମନରେ ତାର ଅସରନ୍ତି ଆଶା

ଓଠରେ ତାର ଅନେକ ଅକୁହା କଥା
ହେ ସମୟ ! ତୁମେ ଟିକେ ଅପେକ୍ଷା କର ।

x x x x x x x x

ସମସ୍ତ ଯୁବସୁଲଭକୁ ପାଦରେ ଦଳି
ଅତି ସନ୍ତର୍ପଣରେ ପାଦ ଚିପି ଚିପି
ବେକାରୀ ପୁଅ ମୋର
ବିଳମ୍ବିତ ପ୍ରହରରେ ଘରକୁ ଫେରୁଛି
ଭଙ୍ଗା ଆଇନାରେ ନିଜ ମୁହଁକୁ ପରଖି
ପାଚି ଯାଇଥିବା ଶ୍ମଶ୍ରୁ କେଇଟାକୁ ନଖରେ ଭିଡୁଛି
ହେ ସମୟ ! ତୁମେ ଟିକେ ଅପେକ୍ଷା କର ।

x x x x x x x x

ମୁଁ ଯେ କର୍ମାଶକ୍ତ ଧନଞ୍ଜୟ
ଜୟଦ୍ରଥ ବଧଲାଗି କରିଛି ଶପଥ
ସମ୍ମୁଖେ ମୋର ଜଳନ୍ତା ଯୁଇ
ନିର୍ବାଣ ସ୍ୟନ୍ଦନ ନଭୁ ଥରି ଥରି ଆସେ
ଶୁଭିଯାଏ ତା ଘର୍‌ଘର୍ ନାଦ
ହେ ସମୟ ! ତୁମେ ଟିକେ ଅପେକ୍ଷା କର ।



# ସନ୍ତ୍ରାସବାଦୀ

ବଗିଚାର ଡଉଲ ଡାଉଲ ଫୁଲମାନେ
ପବନରେ ଝୁଲୁଥିଲେ ଗାଉଥିଲେ
ମହକରେ ଖଣ୍ଡମଣ୍ଡଳଟା ଭରି ଦେଉଥିଲେ ।

x x x x x x x x

ହଠାତ୍ ଦିନେ ମାଳି ଆବିଷ୍କାର କଲା ।
ସେଇ ବଗିଚାରେ ସଂବାଳୁଆ ପୋକ ।
ଯେଉଁମାନେ ଆନନ୍ଦରେ ଭୋଜି କରୁଥିଲେ
ଫୁଲ ଓ ପତ୍ରମାନଙ୍କୁ ବାଣ୍ଟି ଖାଉଥିଲେ ।
ମାଳିର ମନଟା କ୍ରୋଧରେ ବିଷେଇ ଗଲା ।
ବଜାରରୁ ବିଷ ଆଣି ପାଣିରେ ଗୋଳେଇ
ନିର୍ଘାତ ଗୋଟାଏ ସ୍ପ୍ରେ କରିଦେଲା ।
ଅସୁମାରି ପୋକ ଡଙ୍କ ମୋଡ଼ି
ଝଡ଼ିଗଲେ ପତ୍ର ଆଉ ଫୁଲ ପାଖୁଡ଼ାରୁ
ଗର୍ବ ଏବଂ ପ୍ରତିଶୋଧରେ ମାଳି ଫାଟି ପଡୁଥିଲା
ବିଜୟର ଉଲ୍ଲାସରେ ଦୀର୍ଘଶ୍ୱାସ ଛାଡ଼ି ବିଡ଼ି ପିଉଥିଲା ।

x x x x x x x x

କିନ୍ତୁ ପରକ୍ଷଣରେ କେଜାଣି କାହିଁକି
ମାଳିର ଅନ୍ତର ଆତ୍ମା ବିଳପି ଉଠିଲା
ନିଜର ନିଷ୍ଠୁର ଅପକର୍ମ ପାଇଁ

x x x x x x x x

"ଖାଦକ ଖାଇବନି ଖାଦ୍ୟ ଜଗତରେ
ଯାହା ତାର ବଞ୍ଚିବାର ମୂଳ ଅଧିକାର"

x x x x x x x x

ମାଳି ମର୍ମେ ମର୍ମେ ଅନୁଭବ କରୁଥିଲା
ନିଜକୁ ସେଇ ସନ୍ତ୍ରାସବାଦୀମାନଙ୍କ ମେଳରେ
ଯେଉଁମାନେ ବର୍ବରତାର ସୀମା ପାର ହୋଇ
ଅନ୍ୟମାନଙ୍କୁ ନିଶେଷ କରୁଥିଲେ ଅକୁଣ୍ଠିତ ଚିତେ

x x x x x x x x

ଦୂରରୁ ଭାସି ଆସୁଥିଲା ଆର୍ତ୍ତ ଚିତ୍କାର
ମାଳି ଲୁଚି ଯାଉଥିଲା ଘର କଣରେ, ଅନୁଶୋଚନାରେ
କବାଟ ଝରକା ସବୁ ବନ୍ଦ କରିଦେଇ
ନିଜକୁ ନିଜେ ପଚାରୁଥିଲା
ସତରେ ସେ କେମିତି ସନ୍ତ୍ରାସବାଦୀ ହେଲା
ବିନା ଦୋଷରେ ନିରୀହ ପୋକମାନଙ୍କୁ ବିନାଶ କଲା
କାଲି ସେମାନେ ଫୁଲ ହୋଇ ଉଡ଼ିଥାନ୍ତେ
କେତେ ରଙ୍ଗରେ କେତେ ଢଙ୍ଗରେ ପ୍ରଜାପତି ହୋଇ
କବାଟ କଣରେ ମାଳି ଲୁଚି ଦେଖୁଥିଲା
ରକ୍ତରଞ୍ଜିତ ମହାଭାରତର ଅନ୍ତିମ ପର୍ବ ।



# ବାସାଂଶୀ ଜୀର୍ଣ୍ଣାନୀ

ତୁମକୁ ଦେଖିବା ପରେ
ସେ କାହିଁକି ଆକର୍ଷିତ ହେଲା
ତୁମ କଥା ଭାବି ଭାବି
ସାରା ରାତ୍ରୀ ଅନିଦ୍ରା ରହିଲା ।
ବୋଉ ପାଖରେ ତାର ଅର୍ଜି ପେସ୍ କଲା ।
ବାପାଙ୍କର ବି ସ୍ୱୀକୃତି ମିଳିଲା ।
ସନ୍ଧ୍ୟାରେ ଆନନ୍ଦ ମନେ
ସେ ତୁମକୁ ଘରକୁ ଆଣିଲା ।

x x x x x x x x

ତୁମେ ସତେ କେତେ ଭଲ
ତା' ଚଲାପଥକୁ କୁସୁମିତ କରି
ନିଜକୁ ତିଳ ତିଳ ଉତ୍ସର୍ଗ କଲ
ଅନେକ କ୍ଷତବିକ୍ଷତ ବି ହେଲ
ନିଜର ଦୁଃଖକଷ୍ଟ ପାଇଁ
ନା କେବେ କରିଛ ଅଭିଯୋଗ ନା ଅଭିମାନ
କିନ୍ତୁ ସେ ସ୍ୱାର୍ଥୀ କି
ସ୍ଥିତିପ୍ରଜ୍ଞ ସେ କଥା ଜଣାପଡୁନି
ଆଜି ତୁମରି ଆନିଭର୍ସାରୀ ଦିନରେ
ତୁମକୁ ଡଷ୍ଟବିନ୍‌କୁ ଫିଙ୍ଗିଦେବାବେଳେ
ତୁମର ଆକୁଳତାକୁ ବୁଝିବାକୁ
ତାର ଟିକିଏ ବି ଆଗ୍ରହ ନାହିଁ ।

x x x x x x x x

ସେ ଜାଣିଛି ଡଷ୍ଟବିନ୍‌ରୁ
ହୁଏତ କେଉଁ ଅଜଣା ଭିକାରୀ
ଆଦରରେ ତୁମକୁ ସାଉଁଟି ନେବ
ସେତେବେଳେ ତୁମେ ତା ଝରକାକୁ
ତାଚ୍ଛଲ୍ୟ ଚାହାଣୀ ଢାଳି
ଭିକାରୀର ହାତଧରି ପାଦ ବଢ଼ାଇବ
ସେ ପୁଣି, ତା ବୋଉ ପାଖରେ
ଅଳି ଆଉ ଅର୍ଦ୍ଦଳୀ କରିବ
ପୁଣି ତା ବାପାଙ୍କର ସ୍ୱୀକୃତି ମିଳିବ
ତୁମଠାରୁ ଭଲ **ଯୋଡା** ବଜାରରୁ
ତା ପାଇଁ ବି ପୁଣି କିଣାହେବ
ବାସାଂଶୀ ଜିର୍ଣ୍ଣନୀ ଶ୍ଳୋକ, ସେ ପୁଣି ଗୀତାରୁ ଗାଇବ ।



# ବିଦାୟ ବେଳା

ବିଦାୟୀ ମଣିଷଟା ଭିତରେ ହସୁଛି ନା ବାହାରେ
କିଛି ଜଣାପଡୁନି, ତାକୁ ଦେଖିଲେ ।
ବକ୍ତାମାନେ ଅଜାଡ଼ି ଦେଉଛନ୍ତି
ବୋଝ ବୋଝ ପ୍ରଶଂସା ।
ଟେବୁଲ ଉପରେ ଥୁଆ ହୋଇଥିବା
ବ୍ରିଫ୍‌କେସ, ଛତା ଓ ରେଶମୀ ସାଲ
ହସୁଛନ୍ତି, ମିଛ ମଣିଷ ଗୁଡ଼ାକୁ ଦେଖି ।

x x x x x x x x

ମହ ମହ ଭାସି ଆସୁଛି ଖିରୀ ଓ ପଲଉର ବାସ୍ନା ।
ହୁସେନ୍ ଆସିଥିଲା,
କାନ୍ଦୁଥିବା ଛେଳି ଛୁଆଟାକୁ
ତଣ୍ଟି କାଟି ଖୁନ୍ କଲା ।
ବିଦାୟ ସଭା ପରେ ପଙ୍ଗତ ପଡ଼ିବ ।
ସବୁରି ମନ ସିଆଡ଼େ
ସଭାଟା ଖାଲି ଔପଚାରିକ ମାତ୍ର ।

x x x x x x x x

ଯେତେ ଚେଷ୍ଟା କଲେବି
ମୁଁ ପଢ଼ି ପାରୁନଥିଲି
ସେ ବିଦାୟୀ ମଣିଷଟାଙ୍କୁ,
ସତରେ ସେ ବାହାରେ ହସୁଛି ନା ଭିତରେ ।

x x x x x x x x

ନା ସେ ବାହାରେ ହସୁନି କି ଭିତରେ,
ଖାଲି ହସିବାର ଗୋଟାଏ ଅଭିନୟ କରୁଛି ।
ସତ ଅଭିନୟ, କିଛି ସମୟ ଟାଳିଦେବା ପାଇଁ
ଅନ୍ତରର କୋହ ଚାପି, ଖସିଯିବା ପାଇଁ ।



# ମହାବାତ୍ୟା

ସନ ଉଣେଇଶ ଅନେଶ୍ୱତ ବର୍ଷ
ଅକ୍ଟୋବର ମାସ ଦିନ ଉନତ୍ରୀଶ ।

ଉତ୍କଳର ବୁକେ ଦାରୁଣ ବିପତ୍ତି
ଘଟାଇଥିଲା ଯାହା ଧନଜନ କ୍ଷତି ।

ନିଳାଚଳ ଠାରୁ ଚାନ୍ଦିପୁର ଯାଏ
ଧ୍ୱଂସର ତାଣ୍ଡବ ସୃଷ୍ଟିକଲା କିଏ ।

ମହାବାତ୍ୟା ସାଜି ଭୀମକାନ୍ତ ରୂପ
ପଳକ ମାତରେ କଲା ଧ୍ୱଂସ ସ୍ତୁପ ।

କ୍ଷୁଧିତ ସାଗର କାୟା ବିସ୍ତାରିଲା
ଚାହୁଁ ଚାହୁଁ ତଟ ଗ୍ରାମ ଗ୍ରାସିଗଲା ।

କ୍ରୁର ପ୍ରଭଞ୍ଜନ·ଅଶାନ୍ତ ଜଳଧି
ତାଣ୍ଡବ ରଚିଲେ ଚଉଦିଗ ଖେଦି ।।

କ୍ଷେତ ଜନପଦ ସବୁଗଲା ଧୋଇ
ମହୀରୁହ ରାଜି ହେଲେ ଧରାଶାୟୀ ।

ବର, ଓସ୍ତ, ଆମ୍ବ, ଚାକୁଣ୍ଡା ତେନ୍ତୁଳି
ତାଳ, ନାରିକେଳ ପଡ଼ିଛନ୍ତି ଟଳି ।

ନାହାଁନ୍ତି ପାଦପେ ତୋଳିବାକୁ ଶିର
ଚଉଦିଗେ ଶୁଭେ କରୁଣର ସ୍ୱର ।

ଜନ୍ତୁପତି ମୃତ୍ୟୁ ପରୁଆନା ଧରି
ନେଲେ ଯମଦୂତେ ଘୋଷାରି ଓଟାରି ।

ଶିଶୁ, ଯୁବା, ବୃଦ୍ଧ ନୋହିଲା ବାରଣ
ନାରୀ କି ପୁରୁଷ ଉଚ୍ଚ ନୀଚ ଜାଣ ।

ଗୋ, ମହିଷ, ଛାଗ, ମେଷ, ପଶୁକୂଳ
ଖଚର, ଶକୁନ, ବାୟସ, ଶୃଗାଳ ।

ମାଳମାଳ ଶବ ନ ହୁଅନ୍ତି ଗଣି
ଲୋଟି ପଡ଼ିଛନ୍ତି ଛିନ୍ନ ହାର ମଣି ।

ଚଉଦିଗେ ଖାଲି ଶବ ପଚାସଢ଼ା
ନାହାଁନ୍ତି ଶକୁନ ଗ୍ରାସିବାକୁ ମଢ଼ା ।

ନ ଦେଖିଲେ ଆଖି ନହେବ ପ୍ରତ୍ୟୟ
ସତେକି ମାନବ ଏଡ଼େ ଅସହାୟ ।

କାହାନ୍ତି ସ୍ୱଜନ ଢାଳିବାକୁ ଲୁହ
କୁଳ ବୁଡ଼ା କାଳ ହୋଇଛି ଉଦୟ ।

ମଢ଼ା ମୁହେଁ କିଏ ଜାଳିବ ଅନଳ
ବଂଶ ବୁଡ଼ି ବଂଶ ହୋଇଛି ନିର୍ମୂଳ ।

ଭାଗ୍ୟ ବଳୁ ଯିଏ ପାଇଛି ଜୀବନ
ବାସହରା ନିଃସ୍ୱ ଦୀନ ଧନ ହୀନ ।

ବାତ୍ୟାଘାତେ ଜର୍ଜ୍ଜରିତ ତନୁମନ
ଦୁର୍ବଳ ଅଥର୍ବ ଚଳତ୍‌ଶକ୍ତି ହୀନ ।

ନାହିଁ ଖାଦ୍ୟ ନାହିଁ ବାୟୁ କି ପାନୀୟ
ଚଉଦିଗ ଖାଲି ପୁତିଗନ୍ଧ ମୟ ।

କାଲି ରାଜା ଆଜି ହୋଇଛି ଫକିର
ହସ୍ତେ ଭିକ୍ଷା ଝୁଲି କେଡ଼େ ନିର୍ବିକାର ।

ସର୍ବଗ୍ରାସୀ କ୍ଷୁଧା ଜାଗିଛି ଅନ୍ତରେ
ମାନ ମହତକୁ କିଏ ବା ପଚାରେ ।

ରଙ୍କ ତୁଣ୍ଡେ ମୁଠେ ଦେବାକୁ ଆହାର ।
ପ୍ରୟାସ କରନ୍ତି ଦେଶ ସରକାର ।

ଦେଶ ବିଦେଶରୁ ସ୍ୱେଚ୍ଛାସେବୀ ଦଳ
ଉତ୍କଳ ଭୂଇଁରେ ହୋଇଛନ୍ତି ମେଳ ।

କରୁଣାର କର କରି ପ୍ରସାରଣ
ଖାଦ୍ୟ ବସ୍ତ୍ର ଧନ କରନ୍ତି ପ୍ରଦାନ ।

ଉଡ଼ି ଉଡ଼ି ଯାଏ ନଭେ ବ୍ୟୋମଯାନ
ତ୍ରାଣ ଖାଦ୍ୟ ଧରି ଦେବାକୁ ଭୋଜନ ।

ପାଉଁରୁଟି ବିସ୍କୁଟ ଚୁଡ଼ା ଗୁଡ଼ ପାଣି
ବ୍ୟୋମଯାନ ପଥେ ଦେଉଛନ୍ତି ଆଣି ।

ଧନ୍ୟ ସେହିଜନ ଏ ବିପତ୍ତି କାଳେ
ଦୁର୍ଗତଙ୍କ ଲାଗି ନେତ୍ରୁ ନୀର ଢାଳେ ।

ଦେଶର ସଂକଟ ଜନଙ୍କ ବିପତ୍ତି
ନ ଭାବନ୍ତି ଥରେ କେତେକ ଦୁର୍ମତି ।

ବୁଭୁକ୍ଷୁ ତୁଣ୍ଡରୁ ଛଡ଼ାନ୍ତି ଆହାର
କେଡ଼େ ଅବିବେକୀ ସତେ ଏହି ନର ।

ଦୁର୍ଗତ ଆହାର ଯେ କରେ ଲୁଣ୍ଠନ
ଧିକ୍ ସେହି ନର ପିଶାଚ ସମାନ ।

ଦିଅ ସଦବୁଦ୍ଧି ମାନସେ ତାହାର
ହିତାହିତ ଜ୍ଞାନ ଲଭୁ ଏହି ନର ।

ସତେକି ପ୍ରକୃତି ହେବ ଦୟାମୟ
ଅସହାୟ ଲାଗି ହୋଇବ ସହାୟ ।

ଓଷ୍ଠଧାରେ ସତେ ଖେଳିବ କି ହସ
ସତେକି ତା' ପାଇଁ ହେବ ପୁଷମାସ ।

ହାତରେ ସତେକି ଧରିବ ସେ ଦାଆ
ନୀଳାଚଳ ନାଥ ଏକା ତୁମେ ସାହା ।



# ମୋ ଈଶ୍ୱର ଆସନ୍ତି

ମୋ ଈଶ୍ୱର ଆସନ୍ତି ବଡ଼ ଦେଉଳରୁ ପହଣ୍ଡି କରି
ଘଣ୍ଟ ଘଣ୍ଟା କାହାଳୀ ହରିବୋଲ ହୁଳହୁଳି ସାଥେ
ଏପଟ ସେପଟ ଟଳି ଟଳି ଝିଙ୍କା ଓଟରାରେ
ମସ୍ତକରୁ ଖସିପଡ଼େ କେରି କେରି ଦୟଣା ମୁକୁଟ
ବାଧ ଶିଶୁଟିଏ ଭଳି ଆସନ୍ତି ଓହ୍ଲାଇ
ଗୋଟିକ ପରେ ଗୋଟିଏ ପାହାଚ ଡେଇଁ
ଅନାସକ୍ତ ଅପଲକ ନୟନ ଯୁଗଳ
ଅନେକ ବ୍ୟକ୍ତରେ ଅବ୍ୟକ୍ତର ଶୂନ୍ୟତା
ଇଛାହୁଏ କୁଣ୍ଢାଇ ଧରିବାକୁ, ଥରୁଟିଏ ପାଇଁ
ମିଶିଯିବାକୁ, ବ୍ୟକ୍ତରୁ ଅବ୍ୟକ୍ତ ହେବାକୁ ।

x x x x x x x x

ମୋ ଈଶ୍ୱର ଆସନ୍ତି ଗାଁ ଦାଣ୍ଡରେ ଟଳିଟଳି
ଯେତେବେଳେ ଆକାଶ ଛିଣ୍ଡିପଡ଼େ
ବିଜୁଳି ଘଡ଼ଘଡ଼ିର ବିକଟ ରଡ଼ିରେ
ସମୁଦ୍ର ମେଲାଏ ପାଟି ଲହଲହ ଜିହ୍ୱାକାଢ଼ି
କେଉଁ ଏକ ଅନନ୍ତ କାଳର କ୍ଷୁଧା ନେଇ
ଜଳସ୍ଥଳ ହୁଏ ଏକାକାର ବେଦନା ପ୍ଲାବନେ
ବିକଟ ନାଦରେ ଫାଳଫାଳ ହୁଏ ଧରଣୀ ଉଦର
ଅଗ୍ନିର ସ୍ଫୁଲିଙ୍ଗ ଖେଳିଯାଏ ପଣତ ପ୍ରସାରୀ
ନଭଶ୍ଚୁମ୍ବି ଅଟ୍ଟାଳିକା ଶୋଇଯାଏ ଧରଣୀ ବୁକୁରେ
ଅବୋଧ ଘୁମନ୍ତ ଶିଶୁଟିଏ ହୋଇ

x x x x x x x x

ସେତେବେଳେ ମୋ ଈଶ୍ୱର ଆସନ୍ତି
ଗାଁ ଦାଣ୍ଡରେ ଟଳିଟଳି ପ୍ରେମ ଭିକ୍ଷା ପାଇଁ
ଫୁରୁଫୁରୁ କେଶରାଶି, କେରିକେରି ଦୟଣା ମୁକୁଟ
କୋଟରାଗତ ନିଷ୍ପଲକ ନୟନ ଯୁଗଳ
ଟଳମଳ ଦୁର୍ବଳ ପାହୁଣ୍ଡ ଥାପି
ଆଶା ଆଉ ନିରାଶା ଦ୍ୱନ୍ଦରେ
ମୁଠାଏ ବାସି ପଖାଳର ଦୁର୍ବାର ପ୍ରେମ
ନିର୍ବିକାର ନିରଞ୍ଜନ ବିଶ୍ୱବାସୁଦେବ
ଅନେକ ବ୍ୟକ୍ତରେ ଅବ୍ୟକ୍ତର ଭାବ
ଜଠରାଗ୍ନିର କ୍ରୁର ନିପୀଡ଼ନ
ଗଙ୍ଗା ଯମୁନାର ଉତ୍ତାଳ ବନ୍ୟା
ଇଚ୍ଛାହୁଏ ଅବ୍ୟକ୍ତ ହେବାକୁ ସେଇ ବ୍ୟକ୍ତ ମଧ୍ୟରେ
ଭାସିଯିବାକୁ ସେଇ ଗଙ୍ଗା ଯମୁନାର ଉତ୍ତାଳ ସ୍ରୋତରେ
କୁଣ୍ଢାଇ ଧରିବାକୁ ମୋର ସେଇ ପବିତ୍ର ଦାରୁକୁ
ଯିଏ ଭାସୁଥିଲେ ପ୍ରଳୟର ଅନନ୍ତ ଢେଉରେ ।



# ଅପରାଧୀ

ମଣିଷକୁ ମଣିଷ ଭୁଲ ବୁଝେ କାହିଁକି ?
ସେମାନେ ହୁଏତ ବୁଝି ପାରିଲେନି
ସେ ମଣିଷଟି କ'ଣ କହୁଥିଲା ବୋଲି
କେଡ଼େ ସରଳ ମଣିଷଟାଏ
ଝରି ଆସିଥିଲା ତୁମ ପାଇଁ ମନ୍ଦାକିନୀ ହୋଇ
କିନ୍ତୁ ହାୟ ତୁମେ ସତେ କ'ଣ କଲ ?
ତାକୁ ଟିକେ ବୁଝିବାକୁ ଚେଷ୍ଟାକଲ ନାହିଁ ।

X X X X X X X X

ତା ଉପରେ ତୁମେ କେତେ ଅତ୍ୟାଚାର କଲ
ସ୍କନ୍ଧରେ ତା କ୍ରୁଶ ବୁହାଇଲ
ବନ୍ଧୁର ପଥରେ ଘୋଷାଡ଼ି ଘୋଷାଡ଼ି ନେଇ
କ୍ରୁଶରେ ଚଢ଼ାଇ କଣ୍ଟାର ମୁକୁଟ ଦେଇ, ତା ଛାତିରେ କଣ୍ଟା ପିଟି ଦେଲ
ତଥାପି ତୁମକୁ ସିଏ ଅଭିଶାପ ଦେଇନାହିଁ
ଓଲଟି କହିଲା, ''ହେ ଈଶ୍ୱର କ୍ଷମା ଦିଅ ତାକୁ''
ସେମାନେ ଜାଣନ୍ତି ନାହିଁ
ଆଜି କ'ଣ କରୁଛନ୍ତି ବୋଲି''

X X X X X X X X

ପ୍ରଶ୍ନବାଚୀ ତୁମ ପାଇଁ, ମୋ ପାଇଁ, ଆଉ ସେମାନଙ୍କ ପାଇଁ
ସତେ କି ସେ ଅପରାଧୀ ଥିଲା ?
ମଥା ପାତି ନେଲା ଦଣ୍ଡ ସହି ।



# କୃତ୍ତିବାସର ଶେଷକୃତ୍ୟ

ମହାନାଟକର କର୍ଣ୍ଣଧାର ଶୋଇଛି ଆଜି ଉଦାସ ହୋଇ
ଆଖିରେ ତାର ଆଖିଏ ନିଦ ଆଦରି ନେଇଛି ମଶାଣି ଭୂଇଁ ।

ପ୍ରଥମ ଦେଖା ଯେଦିନ ହେଲା ଦେଖିଛି ତାର ପାକୁଆ ପାଟି
ପକ୍ୱ କେଶ କୋଟର ଆଖି ସଳଖି ଧରି ପାରୁନି ଯଷ୍ଟି ।

ରୋଗର ଦାଉ ଉକୁଟି ମୁଖେ ଆକୁଳତାରେ ବିକଶୁ ଥିଲା
ଟିକିଏ ଓଷ ଦିଅହେ ବାବୁ, ରୋଗର ପୁଣି ଏମିତି ଜଳା ।

ପାରୁନି ଜାଣି ବେଳ ଗଲାଣି ଆସିବ ଏବେ ତମସା ଘୋର
ବହିବ ବାଆ ବଡ଼ ଶୀତୁଆ ଲିଭିବ ସଞ୍ଜ ଦୀପ ଏଥର ।

ଏଡ଼ିକି ବଡ଼ ପାଦପ ସିଏ ମେଲିଛି ଡାଳ କାହିଁକୁ କାହିଁ
ଛଅ ପୁଅଙ୍କର ଚବିଶ ପିଲା ଛଅ ବୋହୂ ସାଥେ ତା ପ୍ରାଣ ସହି ।

ପାରିଲେନି ତାକୁ ରଖିତ କେହି ଚାଲିଗଲା ସିଏ ଏକଲା ହୋଇ
କେଇ ବୁନ୍ଦା ଲୁହ ଝରିଲା ଯାହା ତା'ପାଇଁ ଥିଲା କି ଓଷୁଧ ସେହି ।

ବ୍ୟଥା ବେଦନାରୁ ଅନେକ ଦୂରେ କୃତ୍ତିବାସ ଆଜି ଯାଇଛି ଶୋଇ
ଶେଷକୃତ୍ୟ ତାର ଦେଇଛି ସାରି ଆଦରି ନେଇଛି ମଶାଣି ଭୂଇଁ ।



# ପରମାଣୁ

କ୍ଷୁଧିତ ଇଗଲ୍ ଆସେ ଡେଣା ଝାଡ଼ି ଝାଡ଼ି
ଆକାଶ ମେଦିନୀ ପ୍ରକମ୍ପିତ ତା ପକ୍ଷ ସଂଘାତେ
ଚଞ୍ଚୁରେ ପଞ୍ଝାରେ ତାର ଶୋଣିତର ହୋଲି
ପ୍ରକମ୍ପିତ ଗାତ୍ରକାର ରମ୍ଭା ପତ୍ର ସମ ।

x x x x x x x x

ନିର୍ବାକ ନିଷ୍ପନ୍ଦ ପ୍ରାଣ ଜର୍ଜରିତ ଶତ ଦଂଶନରେ
ଆତ୍ମ ପ୍ରତାରଣା ଖାଲି ବଞ୍ଚିବାର ଛଳନା ମଧ୍ୟରେ
ଜୀବନ ଜୀବନ ନୁହେଁ ଇଗଲର ପକ୍ଷ ଛାୟାତଳେ
ମୃତ୍ୟୁର ମୁରୁକି ହସ ଯହିଁ ଜୀବନକୁ ଶୁଣାଏ ଅଭୟ ।

x x x x x x x x

ନିମିଷକେ ତୁମେ ମୁଁ ହେବା ଏକାକାର
ଆତ୍ମା ପରମାତ୍ମା ସମ ଏ ମହା ଶୂନ୍ୟରେ
ଏ ମୋର ଅର୍ଜିଲା କର୍ମ, ତୁମର ବି ଗଂଗଦତ୍ତ ବଂଶୀ
ଜ୍ଞାନ ସାଗର ମନ୍ଥନୁ ହଳାହଳ ବିସ୍ତାରିଛି କାୟା
ଅମୃତ କଳସ ଲୁଚିଯାଏ ଗରଳ ସାଗରେ
ଚତୁର୍ଦ୍ଦିଗ ନୀଳବର୍ଣ୍ଣ, ଖାଲି ନୀଳବର୍ଣ୍ଣ
ରୁଦ୍ରମୟ, ହଳାହଳମୟ ।



# ବଜ୍ର ଶପଥ

ମୁଁ ଯେ କ୍ଷୁଦ୍ର ଶିଶିର ବିନ୍ଦୁ
ଦୁର୍ଗତର ସେବା ମୋ ଜୀବନ ଲକ୍ଷ୍ୟ
ଆସୁ ଯେତେ ବାଧା ବନ୍ଧନ ପଥେ
ବଜ୍ର ଶଥ ନେଇଛି ମୁଁ ଆଜି ଛୁଇଁବାକୁ ମହାସିନ୍ଧୁ ।

ଶୁଭିଯାଏ କର୍ଣ୍ଣେ ବେଦନାର ସ୍ୱର
ବୁକୁଫଟା ଆର୍ତ୍ତ କରୁଣ ଚିତ୍କାର
ଚଉଦିଗେ ଖାଲି ପ୍ରଳୟର ଲୀଳା
ନିସ୍ୱ ମାନବର କରୁଣ ଚାହାଣୀ
ଲୋତକ ବିନ୍ଦୁ ବିନ୍ଦୁ ।

ମୋର ଅସ୍ଥି ହେବ ଅହିଂସା ଲେଖନୀ
ରୁଧିର ହୋଇବ ସେନେହର କାଳି
ଅରାତି ମନରୁ କରି ହିଂସା ଦୂର
ଶାନ୍ତିର ସନ୍ଦେଶ ଦେବ ମୋ ଚିତଉ
ପ୍ରେମର ଲୋତକବିନ୍ଦୁ ।

ହେ ପରମ ପିତା ତୁମରି ଆଶୀଷ
ବିଶ୍ୱ ଜନହିତେ ସମର୍ପିତ ମୁଁ ଯେ
କୋଟିଜନ ମୁଖେ ଖେଳାଇବି ହସ
ମୋ ସାଧନା ସିଦ୍ଧି ହୋଇବ ଜୀବନେ
ତୁମ ପଦ ବନ୍ଦୁ ବନ୍ଦୁ ।



# ଜାଗରଣୀ

ଜାଗିଉଠ ଆଜି ଭାରତ ସନ୍ତାନ
ମରଣକୁ ନାହିଁ ଡର
ଦେଶ ମା’ ପାଇଁ କାମ କରିଯିବା
ନକରି ତିଳେ ଖାତର ।
ହିମଗିରୀ ଠାରୁ କୁମାରୀକାଯାଏ
ବଜାଇବା ବୀର ତୂରୀ
ନବ ଭାରତର ନାଗରିକ ଆମେ
ନ ଯିବା କାହାକୁ ଡରି ।
ଗାନ୍ଧୀ ଗୋପବନ୍ଧୁ ନେତାଜୀ ସୁବାଷ
ଗୋଖେଲ ବଲ୍ଲଭ ଭାଇ
ଶାସ୍ତ୍ରୀ, ଜବାହାର, ବକ୍‌ସି, ତାନ୍ତିଆ
ଉଦ୍ଧାମ, ଲକ୍ଷ୍ମୀବାଈ
ଦେଶର ସ୍ୱରାଜ ପାଇଁ ଦେଲେ ପ୍ରାଣ
ଆମେ କିବା ଏଡ଼େ ହୀନ
ଏ ବୀର ମା’ର ନୋହୁଁକି ସନ୍ତାନ
ନ ଦେବୁ କିଆଁ ଜୀବନ ।
ମାତୃଭୂମି ଲାଗି ଦେବୁରେ ଜୀବନ
କରୁଛୁ ଶପଥ ଆଜି
ତ୍ରିରଙ୍ଗାକୁ ତାର ଉଚେ ଉଡ଼ାଇବୁ
ବୀର ସଇନିକ ସାଜି ।
କୃଷି, ଶିଳ୍ପ ପାଇଁ ଶ୍ରମିକ ସାଜିବୁ
ଗଢ଼ିବୁ ନୂଆ ଭାରତ
ଶାନ୍ତି ମୈତ୍ରୀ ବାଣୀ ପ୍ରଚାର କରିବୁ
ବାପୁଜୀଙ୍କ ମହାମନ୍ତ୍ର ।



# ଖସଡ଼ା ଜଗତ ନଈ

କହରେ ଶ୍ରୁବଲ କହରେ ସୁଦାମ
ପାରୁନି କିଛି ମୁଁ ଜାଣି
ପାଦ ଖସଡ଼ା ନା ଶିଉଳି ଖସଡ଼ା
କିବା ସେ ଯମୁନା ପାଣି
କିଏ ସେ ଖସଡ଼ା ସେ କଥା କହିବ
ଏକା ଗୋପ ରାଧାରାଣୀ
ନିଇତି ଘାଟେ ତା କଳସୀ ଭାଙ୍ଗୁଛି
ଥିବ ଅବା ସିଏ ଜାଣି
କହ ରାଧାରାଣୀ କିଏ ସେ ଖସଡ଼ା
ଯଦି ଅଛି ତୋତେ ଜଣା
ଶାଶୂ ନଣନ୍ଦ ତୋ ନ ବୁଝି ନ ସୁଝି
ଦିଅନ୍ତି କେତେ ଗଞ୍ଜଣା
କହେ ରାଧାରାଣୀ ମନ ମୋ ଖସଡ଼ି
ଭାଙ୍ଗୁଚି କଳସୀ ନିତି
କହ୍ନେଇ ବଇଁଶୀ ସ୍ୱରଟା ମୋ ମନ
କରୁଛି ଖସଡ଼ା ଅତି
କହରେ କହ୍ନେଇଁ ବଇଁଶୀ ସୁର ତୋ
କିମିତି ଖସଡ଼ା ହେଲା
ପାଦ ଖସଡୁଛି କଳସୀ ଭାଙ୍ଗୁଛି
ଲଗାଉଛି ଏତେ ପାଲା ।
ବଇଁଶୀ ସୁର ମୋ ନୁହଁଇ ଖସଡ଼ା
ଖସଡ଼ା ସେ ରୂପ ନଈ
ସାରା ଜଗତଟା ସେ ନଈରେ ଭାସି
ଯାଉଛି ଖସଡ଼ା ହୋଇ
କେତେ ଗାଳିଦିଅ ବଇଁଶୀକୁ ମୋର
କିବା ଅଛି ଦୋଷ ତାର
ଜଗତ ଖସଡ଼ା ସହଜ ସ୍ୱଭାବେ
ଚିର ସତ୍ୟ ନିରନ୍ତର ।



# ଲୁଣ୍ଠିତ ରାମରାଜ୍ୟ

ବାପୁ ଥରେ ଆସ ଫେରି
ତୁମରି କଳ୍ପିତ ରାମ ରାଜ୍ୟ ଆଜି
ହୋଇଛି କି ହତଶିରୀ ।
ବାପୁ ଥରେ ଆସ ଫେରି ।

ସ୍ମୃତିର ମଶାଲ ଆଜି ମୁଁ ଜାଳୁଛି
ତ୍ରିରଙ୍ଗା ହାତରେ ଧରି
ଅର୍ଦ୍ଧ ଶତାବ୍ଦୀର ଇତିହାସ ଲେଖେ
ନୟନେ ଲୋତକ ଭରି
ବାପୁ ଥରେ ଆସ ଫେରି ।

ଏବେ ବି ରାବଣ କପଟ ଆଚରି
ଅବଳା ନେଉଛି ହରି
ଦୁଃଶାସନ ହାତେ ପାଞ୍ଚାଳୀ ପଣତ
ନିର୍ବାକ ସେ ଗିରିଧାରୀ
ବାପୁ ଥରେ ଆସ ଫେରି ।

ଜଡ଼ ପ୍ରଗତିକୁ ହାତେ ମୁଠା କରି
ମଣିଷ ପଣିଆ ଭୁଲି
ସତ୍ୟ ଅହିଂସାକୁ ପାଶୋରି ଦେଇଛୁ
ବିବେକ ସଉଦା କରି
ବାପୁ ଥରେ ଆସ ଫେରି ।

ଜାତି, ଧର୍ମ, ଭେଦ ଏବେ ବି ରହିଛି
ଅଶିକ୍ଷାକୁ ଆଶ୍ରେ କରି

ସ୍ନେହ, ପ୍ରେମ, ଦୟା ତୁମ ସିଦ୍ଧ ମନ୍ତ୍ର
ଦେଇଛୁ ସବୁ ପାଶୋରି
ବାପୁ ଥରେ ଆସ ଫେରି ।

ଆଉ ଥରେ ତୁମ ନବ ପ୍ରେରଣାରେ
ହିମଗରି ଉଠୁ ଥରି
ସତ୍ୟର ପତାକା ଉଡୁ ଫରଫର
ଶାଶ୍ୱତ ପ୍ରେମର ଭରି
ବାପୁ ଥରେ ଆସ ଫେରି ।

ତୁମରି କଳ୍ପିତ ରାମରାଜ୍ୟ ଆଜି
ହୋଇଛି କି ହତଶିରୀ
ବାପୁ ଥରେ ଆସ ଫେରି ।



# ସମର୍ଥ ପୁଙ୍ଗବ

ନିମ୍ନ ଶାଖାରେ ପାଦଥାପି
ଶିଖରକୁ ଉଠିଗଲା ପରେ
ଶାଖାମାନେ ହଜି ଯାନ୍ତି
ବିସ୍ମୃତିର ଅତଳ ଗର୍ଭରେ ।

x x x x x x x x

ନିର୍ବୋଧ ଏ ଶାଖାମାନେ
ଅହଲ୍ୟା ହେବା ଆଶାରେ
କୂର୍ମ ପାଲଟି ଗଲେ, ଇନ୍ଦ୍ରଦ୍ୟୁମ୍ନ କୂଳେ
ମୋ ପାଦର ଶକ୍ତ ଗୋଇଠାରେ ।

x x x x x x x x

ନବ କିଶଳୟ କୋଳେ
ଶିଖରେ ମଣ୍ଡିତ ମୂର୍ତ୍ତି
ପ୍ରାଚୁର୍ଯ୍ୟର ଫେନିଳ ଶଯ୍ୟାରେ
ବିହଗ ବାସନା ମୋର
କୁଳୁବୁଲି ପ୍ରଜାପତି ମନ
ସୁରକ୍ଷିତ ଆଭିଜାତ୍ୟ
ମୋ ନିବାସ କକ୍ଷ
ସ୍ୱପ୍ନିଳ ସେ ମୌର୍ଯ୍ୟ ସରାଟକ୍ ।

x x x x x x x x

ଶୁଣାଅନା ଅବାସ୍ତବ
ଅପଶବ୍ଦମାନ
ପୋଛିଦିଅ ଅଭିଧାନ ବକ୍ଷୁ ।

ବନ୍ୟା, ବାତ୍ୟା, ଅନାହାର
ନିଷ୍ପେଷିତ, ଦଳିତ, ଅନାଥ
ଦାନ, ଅନୁଦାନ, ଆର୍ତ୍ତ
ବୁଭୁକ୍ଷୁ ତୃଷାର୍ତ୍ତ

x x x x x x x x

ଝୁମା ଝୁମା ଅଳସ ସ୍ମୃତିକୁ ମୋର
ରାପ୍ ସଙ୍ଗୀତର ସୁରେ
ମଧୁମୟ କରି ରଖ ଦିବସ ରଜନୀ ।
ଓଃ ! କିଛି ବୁଝା, କିଛି ଟା ଅବୁଝା
ତଥାପି ! ଧନ୍ୟ ମୋ ଜୀବନ
ତଳେ ଥୋକେ ଅସମର୍ଥ ମେଷ
ଆଉ ଶିଖରେ ମୁଁ ସମର୍ଥ ପୁଙ୍ଗବ ।



# ତୁମ ପାଇଁ ପଦେ

ଏ ଧାରାର ଅନନ୍ତ ଶକ୍ତି (ଜଳ)
କୂଳ ଲଂଘି ବନ୍ୟା ପାଲଟିଛି
ଚୂଡ଼ା, ଚାଉଳ, ରାହତ୍ ସେଥିପାଇଁ ଲୋଡ଼ା
ଆସ ଆମେ ମିଳିମିଶି ରାହତ୍ ବାଣ୍ଟିବା
ବେଳ କାଳ ଉଣ୍ଡି କଉଶଳ କରି
ନିଜ ନିଜ ଅଣ୍ଟି ଭରି ନେବା ।

X X X X X X X X

ଏ ଧରାର ଅନନ୍ତ ଶକ୍ତି (ଯୁବ)
କର୍ମ ବିନା ବେକାର ସାଜିଛି
ପଞ୍ଚାକ୍ଷରି ମନ୍ତ୍ର ଜପି ଜପି
ଉତ୍ତପ୍ତ ସାହାରା ବୁକେ ଝରଣା ଖୋଜୁଛି
ଆସ ଆମେ ତାକୁ ଡାକି ନେବା
ନିଜ ନିଜ ସ୍ୱାର୍ଥ ପାଇଁ ନିର୍ବାଚନ ବେଳେ
ତାଙ୍କ ହାତେ କଞ୍ଚା ଟଙ୍କା ବୋତଲ ଧରେଇ
ନିଜ ପାଇଁ ଭୋଟ ଯୋଗାଡ଼ିବା ।

X X X X X X X X

ଏ ଧରାର ଅନନ୍ତ ଶକ୍ତି (ଜଳ)
ଧରାକୁ ଶସ୍ୟ ଶ୍ୟାମଳା କରିପାରେ
ତୁମ ପାଇଁ ମୋପାଇଁ ହସ ବୁଣିପାରେ
ଅମା ଅନ୍ଧକାରେ ଜ୍ୟୋତି ସାଜିପାରେ
ଟିକିଏ ଖାଲି ଆନ୍ତରିକତା ଲୋଡ଼ା
ଏ କୂଳରୁ ସେ କୂଳ ଯାଏ ବନ୍ଧଟିଏ ପାଇଁ ।

ଏ ଧରାର ଅନନ୍ତ ଶକ୍ତି (ଯୁବ)
ତୁମ ପାଇଁ ମୋ ପାଇଁ ରକ୍ତ ଢାଳିପାରେ
ଅରାତି କମାଣ ଆଗେ ଛାତି ପାତିପାରେ
ବ୍ରହ୍ମା, ବିଷ୍ଣୁ, ଶିବଙ୍କର ଅବତାର ସିଏ
ସୃଷ୍ଟି, ପାଳନ, ପ୍ରଳୟ, ତା ହାତ ମୁଠାରେ
ନିମିଷକେ ସେଇ ଯୁବଶକ୍ତି ଧ୍ୱଂସ ରଚିପାରେ

X X X X X X X X

କେତେ ଦିନ ତୁମେ ତାକୁ ଭୂଆଁ ବୁଲେଇବ
ତୁମର କଳାଟଙ୍କା ଓ ଔଦ୍ଧତ୍ୟକୁ
ସହିବାର ନିଶ୍ଚୟ ଗୋଟାଏ ସୀମା ଅଛି
ଏବେ ଵି ସମୟ ଅଛି ବଡ଼ପଣ୍ଡାମାନେ
ଆସ ଆମେ ମିଳିମିଶି ନିଳାଚଳ ଯିବା
ନିଜ ଦୁଃଖ, ସୁଖ ଏବଂ ମହାପ୍ରସାଦକୁ ସମାନ ବାଣ୍ଟିବା ।



# ନିଶ ବଡ଼ ବଡ଼

ଛୋଟ ହେବା ପାଇଁ କାହାର ବା ମନ
ସଭିଏଁ ତ ଧାଇଁଛନ୍ତି ହେବା ପାଇଁ ବଡ଼
ସେଥିପାଇଁ ଛକାପଞ୍ଝା ତଣ୍ଟି କଟାକଟି
ନାଲି ଆଖି ନିଶ ବଡ଼ ବଡ଼ ।

ତୁମେ ସତେ କେତେ ସାନ ସେ କଥା ଜାଣିନ
ମିଛେ ଖାଲି କରୁଛ ବଡ଼େଇ
ନିମିଷକେ ତୁମ ଦର୍ପ ହେବ ଧୂଳିସାତ୍
ବିଧିଥରେ ଚାହିଁଲେ କଡ଼େଇ ।

ବୃଥା କିଆଁ ଦେଖାଅ ବହପ
ମତ ଗର୍ବେ ଫୁଲି ଉଠ ଭାଇ
ଅଢ଼େଇ ଦିନ କୁଣିଆଁ ସର୍ବେ ଏ ସଂସାରେ
ଆଜି ଆସି କାଲି ଯିବା ପାଇଁ ।

ଆନକୁ କଷଣ ଦେଇ ହୁଅନାହିଁ ଖୁସି
ସବୁ କଥା ନିରେଖୁଛି ବିହି
ଭଲମନ୍ଦ କରିବ ବିଚାର
ସେତେବେଳେ ହେଉଥିବ ରହି ।

ଭୂଗୋଳ ପୋଥିରେ ନ ଥିଲାତ ଗାଁ ନାଆଁ
ସବୁ ତ୍ୟାଗୀ ହେଲେ ସିଏ ବଡ଼
ଯୀଶୁ କୁହ, ଗାନ୍ଧୀ କୁହ, କୁହ ଅରବିନ୍ଦ
ମଣିଷକୁ ଭଲ ପାଇ ସୃଜିଗଲେ କିର୍ତ୍ତୀର ପାହାଡ଼ ।

ଦେଶ ପାଇଁ କିଏ ଦେଲା ପ୍ରାଣ
ବନ୍ଧୁକ କମାଣ ଆଗେ ପତାଇଲା ଛାତି
ବହିଗଲା ହୋଇ ଦୟା ନଈ
ଭାବିନାହିଁ ବଢ଼ି ଝଡ଼ି ରାତି ।

କୁପଥକୁ ଛାଡ଼ି, ଫେରିଆସ ସୁପଥକୁ ଥରେ
ଦେଖ ଶାନ୍ତିର ପିୟୁଷ ସେଠି ଝର ଝର ଝରେ,
ଅନ୍ୟ ପାଇଁ ନିଜକୁ ଅଜାଡ଼ି ଦିଅ, ତେବେ ହେବ ବଡ଼
ଯୁଗେ ଯୁଗେ ରହିବ କିରତି
ଲୋଡ଼ାନାହିଁ ନିଶ ବଡ଼ ବଡ଼ ।



# ଅସଜଡ଼ା ମଣିଷ

ମହାମହୀମ କର୍ଣ୍ଣଧାର କହିଲେ
'ଜେଲର କଏଦୀମାନେ
ସୁଧୁରିବେ ଯୋଗ ଧ୍ୟାନ କରି'
ଅସଜଡ଼ା ମଣିଷ ଗୁଡ଼ାକ
ଧରା ପଡ଼ିଛନ୍ତି ଏଇଠି ସଜଡ଼ା ହେବେ
ସାଧୁ ଆଉ ସନ୍ଥ ପାଲଟିବେ

x x x x x x x x

କିନ୍ତୁ ଧୋବ ଧାଉଳିଆ
ବାବୁମାନଙ୍କୁ ସଜାଡ଼ିବ କିଏ ?
ଯେଉଁମାନେ ଦେଶଟାକୁ
ଚକ୍ଷୁ କରୁଛନ୍ତି ଅଗସ୍ତି ରୂପରେ ।
ଉଦରଟା ଝୁଲିପଡ଼ି ଭୂମି ସ୍ପର୍ଶ କଲେ ବି
ବାବୁଙ୍କର ଖାଇବା ସରେନି,
ଘରଣୀ ବି କିଛି କହନ୍ତିନି ନା ପିଲାମାନେ ।
ସେତିକି ଖାଅ, ସେତିକି ଖାଅ
ପେଟ ବିଗିଡ଼ିବ, ଅଜୀର୍ଣ୍ଣ ଧରିବ ।

x x x x x x x x

କେହି ବି ବୁଝିପାରୁ ନାହାଁନ୍ତି
ତୁମର କେତେ ଖାଇବା ଦରକାର
କେତେବେଳେ ତୁମର କ୍ଷୁଧା ଶାନ୍ତି ହେବ ?
ଚାଟିଚୁଟି ପ୍ଲେଟ୍‌ଟାକୁ ସଫା କରିଦିଅନା
ଟିକେହେଲେ କଡ଼କୁ ଲାଗିଥାଉ

ପିମ୍ପୁଡ଼ିମାନେ ନିରାଶରେ ଫେରିଯିବେ
ଉପବାସେ ନିଶି ପୁହାଇବେ ।
ତାଙ୍କ କଥା ଟିକେ ଭାବ ।
ଟିକେ ହେଲେ ସଜାଡ଼ି ହୁଅ ।



# କାହିଁକି ତାଣ୍ଡବ

ରାତ୍ରୀର ଅନଳ ଶିଖାକୁ ଦେଖି
ଧାଉଁଥିବା ପତଙ୍ଗମାନେ କେତେ ଜାତିର ସବେ ?
ଧାଇଁ ଆସନ୍ତି ନିଜକୁ ନିଃଶେଷ କରିବାକୁ ।
ଏ ମରତ ଧାମରୁ ବିଦାୟ ନେବାକୁ ।
ପଚାରିଲେ କହନ୍ତି, ଏ ଆମର ଧର୍ମ,
ବିଭୁ ପାଦରେ ନିଜକୁ ସମର୍ପି ଦେବା ଭାବ ।
ଅନଳ ମଧ୍ୟକୁ ଡେଇଁ ପଡୁଥିବା ପତଙ୍ଗ
ପଚାରେନି ତା ସାଥୀ ପତଙ୍ଗକୁ
ନିଜର ଜାତି, ଧର୍ମ କି କୁଳ, ଗୋତ୍ର ।
କେବେବି କହିବାର ଶୁଣା ନାହିଁ
କିଏ କହିଥିଲା କାହାକୁ ବଦଳାଇବାକୁ
ନିଜର ରୂପ ଜାତି କିମ୍ବା ଧର୍ମ ।
ନା କିଏ ଭାଙ୍ଗୁଥିଲା ମନ୍ଦିର, ମସଜିଦ୍ ନା ଗୀର୍ଜା ।
ପରମ ପଦରେ ଲୀନ ହେବାକୁ
ନା ଲୋଡ଼ାଅଛି ମନ୍ଦିର୍ ନା ମସ୍‌ଜିଦ ନା ଗୀର୍ଜା ।
ଯଦି ଗଢ଼ିଥିଲ ଭାଙ୍ଗୁଛ କାହିଁକି ?
ଇଟା, ପଥରରେ ଅଟକି ଯାଏନି ପଥ,
କିମ୍ବା ଭାଙ୍ଗିଦେଲେ ସେ ପଥ ଉନ୍ମୁକ୍ତ ହୁଏନି
ଅନଳରେ ଝାସ ଦେବା ଆଗରୁ
ଇଟା ପଥର ସହିତ ଲଢ଼େଇ କାହିଁକି ?
ବଳ କଷାକଷି, ଶକ୍ତି ପ୍ରଦର୍ଶନ କଣ ପାଇଁ ?

X X X X X X X X

ବିଭୁ ପଦରେ ଏକାକାର ହେବାକୁ
କିଏ ସେ ଜାଣିଛି କେଉଁଟି ସଠିକ୍ ପଥ ?

ଆତ୍ମାହୁତି ଦେବାର କ'ଣ ବା ସଠିକ୍ ନିୟମ ।
ସିଏତ ଅଦୃଶ୍ୟ ପଥ,
ବ୍ୟକ୍ତରୁ ଅବ୍ୟକ୍ତ ହେବାର ପଥ,
ଯେମିତି ବି ହେଉ ତୁମକୁ ସେ ପଥ
ଦିନେନା ଦିନେ ନିଶ୍ଚୟ ମିଳିବ ।
ଯିବା ଆଗରୁ ଏ ତାଣ୍ଡବ କାହିଁକି ?



# କଚ୍ଛପ ଅବତାର

ବଣବୁଦା ନଈ ପଠା ଧାରେ
ଥିରି ଥିରି ଚାଲୁଥାଇ ସିଏ
କୁନି ପାଦ ଟିକି ମୁଣ୍ଡ କାଢ଼ି ।
ପାଇଲେ ସାମାନ୍ୟତମ ବିପଦ ସଙ୍କେତ
ଚୁପ୍‌ଚାପ ରହିଯାଏ ପାଦ ମୁଣ୍ଡ ଜାକିଜୁକି
ସତେ କିଛି ନ ଜାଣିଲା ପରି

X X X X X X X X

ତା' ଘୁମନ୍ତ ଆଁଖିପତା ତଳେ
ପୋକ ଝୋକ ଭାସିଯାନ୍ତି ସବୁ
ଚଳଚ୍ଚିତ୍ର ଛବି ମାନ ହୋଇ,
କିନ୍ତୁ ଲାଳସାରେ ତାର ସେଇ
ଅସନା ମନଟା ଛଟପଟ ହୁଏ,
ପୋକଟିକୁ ଧରିବାକୁ ସାହାସ ହେଉନି ଆଜି
ପ୍ରତୀକ୍ଷିତ ବିପଦ ଆଶାରେ ।
ପାଦ ମୁଣ୍ଡ ଢାକି ଦେଲା ପରେ
କେଡ଼େ ସୁରକ୍ଷିତ ସାଞ୍ଜୁଆ ଖୋଳପା ତଳେ

X X X X X X X X

କିନ୍ତୁ ଭଦ୍ର ପେଷାକ ତଳେ
କପଟୀ ମଣିଷଗୁଡ଼ାଙ୍କୁ ଦେଖିଲେ
ମୋର ମନେ ପଡ଼େ ସେଇ କଇଁଛଟିର କଥା
ତା' ଭିତରେ ଓ ଏମାନଙ୍କ ଭିତରେ କଣ ବା ଫରକ ।
ଭଦ୍ର ଆବରଣ ତଳେ ବେଇମାନୀ ମନ ନେଇ

ଶୋଷି ଯାଆନ୍ତି ସମାଜର ପଳ ପଳ ରକ୍ତ ।
ହାଡ଼ ଓ ମାଉଁସ, ଜହ୍ଲାଦ ରୂପରେ
କାହା ଭିତରେ ହାଡ଼ ଅଛି
ତାଙ୍କ ଉପରେ ଅଙ୍ଗୁଳି ଉଠେଇବାକୁ ।
ଭଦ୍ର ଆବରଣ ତଳେ
ସିଏତ ଧାରଣ କରିଛନ୍ତି କଚ୍ଛପ ଅବତାର ।



# ତୁରନ୍ତ ଫାଇଲ୍ ଛାଡ଼

ବାବୁ କିଛି ଭଲକାମ କର
ନାଲିଫିତା ବାନ୍ଧି ଫାଇଲକୁ ଚାପି
କର ଯାହା ହରବର ।

ନିଜ ଘର ନିଜ ପରିବାର କଥା ଭାବି
ଆନକୁ ମାରୁଛ ଦୁଃଖେ କନ୍ଦାଉଛ
ସ୍ୱାର୍ଥ ସାଗରେ ବୁଡ଼ି ।

ଭାବି ଦେଖ ନିଜେ ଥରେ
ତୁମ ଘରେ କିବା ଏକା ରଜ, ହୋଲି
ନାହିଁ କିବା ଆନ ଘରେ
ଦି'ଟୋପା ଲୁହରେ ଉଜୁଡ଼େ ସଂସାର
ଦେଶ ହୁଏ ଛାରଖାର ।

ବାଟ ହୁଡ଼ିଗଲେ କଣ୍ଟକ ପଥେ
ଝରଇ ରକତ ଧାର ।
ଯେଉଁ ଭାବନାରେ ଆନେ କନ୍ଦାଉଛ
ନୁହଁଇ ଉଚିତ କର୍ମ ।

ସତ୍ୟପଥେ ଚାଲ ଦୟାଭାବ ବହି
ଜଗତରେ ରହୁ ଧର୍ମ ।
ତୁମର ତାହାର ଦୁଇଦିନ ହାଟ
ସଭିଙ୍କୁ ଏକଥା ଜଣା
ନିଜ ପଦବୀକୁ କଳୁଷିତ କରି
ହୁଅ କିଆଁ ବାଟବଣା ।

ହୁତାଶନ କ୍ଷୁଧା ନୁହଁଇ ତୃପତ
ଲଭିଲେ ଆହାର ଯେତେ

ତୁମ କ୍ଷୁଧା ବାବୁ ତାହାଠାରୁ ବଳି
ବିଦିତ ଆଛି ଜଗତେ ।

ଧରମେ ଶରଣ ନିଅ
ଜଗତ ସେବାରେ ଜୀବନ ତୁମର
ଜାଣିଚାଏ ଭଲା ଦିଅ ।

ଆନର ମଙ୍ଗଳ ଚିନ୍ତିଲେ ମାନସେ
ଜଗତେ ହୋଇବ ବଡ଼
ଏ ମର ସଂସାରେ ଦେବତା ହୋଇବ
ତୁରନ୍ତ ପାଇଲ୍ ଛାଡ଼ ।



# ଅଭିମାନୀ

ଇତିହାସ କୋଳେ ଗୌରବ ଥୋଇ
ଉତ୍କଳ ଗୌରବ ପଡ଼ିଅଛି ଶୋଇ
ମନ୍ତ୍ର ଯାଇଛି ଭୁଲି
ନିର୍ବାକ ଆଜି ସେ ଆମ ଆଚରଣେ
ଅଭିମାନେ ଉଠେ ଫୁଲି ।

x x x x x x x x

ବୁକୁଫଟା ତାର ବେଦନାର ସ୍ୱର
ନୟନର କୋଣେ ଲୋତକର ଧାର
ଦେଖୁଛ କି ଆଖି ମେଲି ।
ପାରିବକି କହି ବୁକେ ହାତ ଦେଇ
ମୁଁ ତୁମ ଦାୟାଦ ବୋଲି ।

x x x x x x x x

ଦିଗହରା ଆଜି ଜାତି ନନ୍ଦିଘୋଷ
ସ୍ୱାର୍ଥ ପଥେ ଧାଏଁ ଏକି ସର୍ବନାଶ
ହିତାହିତ ଜ୍ଞାନ ଭୁଲି
ଜାତୀୟ ସମ୍ପତ୍ତି ପାକୁଳି କରୁଛୁ
ମତ ଗର୍ବେ ଝୁଲି ଝୁଲି ।

x x x x x x x x

ସତେ କି ଦୁର୍ବଳ ଆଜି ଏ ଓଡ଼ିଆ
ଇତିହାସେ ଦିନେ ଥିଲା ଯାର ନାଆଁ
ରକ୍ତରେ ଖେଳି ହୋଳି
ଖୋରଧା ମାଟିରେ ବାରବାଟି ଗଡ଼େ
ବିଜୟର ଧ୍ୱଜା ତୋଳି ।

x x x x x x x x

କେଣେ ଗଲା ସେହି ଉତ୍କଳ ଟ୍ୟାନେରୀ
ଜାତି ପ୍ରୀତି ସ୍ନେହ ସ୍ୱାଭିମାନ ଗିରୀ
ସବୁତ ଯାଇଛୁ ଭୁଲି
ତୁମ ଜନ୍ମତିଥି ପାଳନ କରୁଛୁ
ବିବେକ ସଉଦା କରି

x x x x x x x x

ଉଠ ହେ ତାନ୍ତ୍ରିକ ଆଜି ଆମ ପାଇଁ
ଜାତି ପ୍ରେମ ପ୍ରୀତି ବହ୍ନି ଉଠୁ ଚେଇଁ
ବିସ୍ମୃତିର ଦ୍ୱାର ଖୋଲି
ପୁରୁବ କୀରତ୍ତି ଗୌରବ ରାଜି
ତୁମ ଆବାହନୀ ବୋଲି



# ପୁଣି ବସନ୍ତ ଫେରିବ

ବୈଧବ୍ୟ ଆସିଲେ ଋତୁଚକ୍ର ବଦଳିଯାଏ
ଧାରା ଶ୍ରାବଣ ପରେ ହାଡ଼ଭଙ୍ଗା ଶୀତ ଆସେ
ଶୀତ ପରେ ବସନ୍ତକୁ ଡେଇଁ ଗ୍ରୀଷ୍ମ ପାଦ ଥାପେ
ବସନ୍ତର ମାଦକତା କୋଇଲିର କୁହୁତାନ
ଆମ୍ର ବଉଳର ବାସ୍ନା ଦକ୍ଷିଣା ପବନର ସୁରଭି
ହଜିଯାଏ କେଉଁ କାଳବୈଶାଖୀର ପଣତ ତଳେ ।

x x x x x x x x

ଜୀବନର ସବୁଜିମା ମରୁନଦୀ ପରି ଅର୍ଥହୀନ ହୁଏ
ଇଚ୍ଛାହୁଏ ଅଭିଶାପ ବର୍ଷିବାକୁ, ଈଶ୍ୱରଙ୍କୁ ଏ ପୃଥିବୀକୁ
ନିଜ ଜନ୍ମକୁ, ଭାଗ୍ୟକୁ ଆଉ, ଅଲୋଡ଼ା ଜୀବନକୁ
ନୀତି ଓ ଆଦର୍ଶକୁ, ପ୍ରତିଶ୍ରୁତିକୁ, ସ୍ୱାର୍ଥୀ ମଣିଷକୁ ।

x x x x x x x x

ମୁଁ ଗଣତନ୍ତ୍ରର ବୈଧବ୍ୟ ଦେଖିଛି, ଦେଖିଛି ତାର ଶୂନ୍ୟ କପାଳ
ଫୁଙ୍ଗୁଳା ହାତ ନିଷ୍ପ୍ରଭ ଆଖିର ଗଙ୍ଗା ଯମୁନା
ରାମରାଜ୍ୟର ସ୍ୱପ୍ନ ଦେଖିଥିବା ବାନର ସେନା
ସ୍ୱାର୍ଥୀ ପ୍ରଶାସକର ମତ୍ତଗର୍ବ ଠାଣି, ଆତ୍ମବଡ଼ିମା
ବନ୍ୟା ବାତ୍ୟାର ରାହତ, ପଲିଥିନ୍ ଆଉ କମ୍ବଳ କିଣା
ଅଂଶୁଘାତର ଜଳଛତ୍ର ଓ ସାଲାଇନ୍ କିଣା
ନକ୍ସଲ ଓ ମାଓବାଦୀଙ୍କୁ ପ୍ରସବ କରୁଥିବା ରାଜନେତା
ନିରୀହ ଆଦିବାସୀର ରକ୍ତରଞ୍ଜିତ ଶରୀର ଓ କଟାହାତ

x x x x x x x x

ପିତୃସତ୍ୟ ପାଳିଥିବା ରାମ ନିସ୍ତବ୍ଧ ହୁଏ ରାବଣର ଅଟ୍ଟହାସ୍ୟରେ
ଅକ୍ଟୋପାସର ପଞ୍ଝା ଶକ୍ତହୁଏ ଗଣତନ୍ତ୍ରର କଣ୍ଠରୋଧ କରି
ବୈଧବ୍ୟ ଜୀବନର ଅସାରତା, ଶଙ୍ଖା ଆଉ ସିନ୍ଦୂର କାହା ପାଇଁ
ସବୁ ପ୍ରତିଶ୍ରୁତି ପାଣିର ଗାର ଯାହାସବୁ ଚୁପଚୁପ କହିଥିଲ
ଭିକ୍ଷା ନେଇ ଚାଲିଯିବା ପରେ ମୁଁ ଚାହିଁଛି ତୁମରି ପଥକୁ
ତୁମେ କେବେବି ଫେରିବ ନାହିଁ, ବସନ୍ତ କେବେବି ଆସିବ ନାହିଁ
ବୈଧବ୍ୟ ବେଶରେ ତଥାପି ମୁଁ ଅପେକ୍ଷା କରିବି
କାଳେ ତୁମେ ମୋ ଭଙ୍ଗା କୁଟୀରକୁ ଲେଉଟି ଆସିବ
ଶଙ୍ଖା ଆଉ ସିନ୍ଦୁର ଧରି ମୋ ମଥା ଭରିବ
ଋତୁଚକ୍ରରୁ ହଜିଯାଇଥିବା ବସନ୍ତ ପୁଣି ଫେରିବ ।



# ମୋତେ ପଚାର

ମୋତେ ପଚାର ?
ମୁଁ କାହିଁକି ରାଜରାସ୍ତାକୁ ଓହ୍ଲାଇ ଆସେ
ସ୍ଲୋଗାନ୍ ଦେଇ, ହାତରେ ପ୍ଲାକାର୍ଡ ଧରି ।
ମୁଁ ବି ଜାଣିଛି, ତୁମେ ବି ଜାଣିଛ ।
"ମାଗିଲେ କେହି ଅଧିକାର ଦିଅନ୍ତିନି
ଯୋର କରି ତାକୁ ହାସଲ କରିବାକୁ ହୁଏ"
ଏ ମାଟି ପାଣି ପବନ ଆମ ସମସ୍ତଙ୍କର
ମୁଁ ଏଠି ଅପାଂକ୍ତେୟ ନୁହେଁ ।

x x x x x x x x

ମୋ କ୍ଷେତ କେମିତି ଶୋଇଛି ଆଁ କରି
ଶାମୁକାଏ ପାଣି ପାଇଁ
ତା' ପିଲାମାନେ ଅକାଳରେ ଝଡ଼ିଗଲେ
ସୂର୍ଯ୍ୟ ନିଆଁରେ ଜଳିପୋଡ଼ି ।

x x x x x x x x

କଂକ୍ରିଟ ଅରଣ୍ୟରେ ସହର ଜଳୁଛି
ବୁଲଡୋଜର୍‌ର ନଗ୍ନ ଆକ୍ରମଣ
ମୋ ଝୁମ୍ପୁଡ଼ିକୁ ବିବସନା କଲା
ପାଞ୍ଚାଳୀର ଆର୍ତ୍ତନାଦ ଦୁଃଶା ଅଟ୍ଟହାସ୍ୟ
ନିର୍ବାକ୍ କୁରୁସଭା, ସୁପ୍ତ ଗଣତନ୍ତ୍ର ।

x x x x x x x x

ମୋ ଚପଲର ଗୋଇଠି ପାକୁଆ
ଅଫିସରୁ ଅଫିସକୁ ଦଉଡ଼ି ଦଉଡ଼ି

ସବୁଠି ବେକାରଙ୍କର ଲମ୍ଫାଧାଡ଼ି
ମୁଠାଏ ଚାଉଳ ପାଇଁ ମୁଣ୍ଡ ବିକିବାକୁ ।

x x x x x x x x

ସୁଇସ୍ ବ୍ୟାଙ୍କକୁ କୁଆଡ଼େ ଆସେ ଏତେ ଟଙ୍କା
ରାସ୍ତାଘାଟ ଭାରି ଭିଡ଼
କାର୍ ଗୁଡ଼ା ପାର୍କିଂ ପାଇଁ ଯାଗା ଖୋଜୁଛନ୍ତି
ବିଚରା ରାମିଆ ବିକିଦେଲା
ରିକ୍ସା ତାର କବାଡ଼ି ବାଲାକୁ ।

x x x x x x x x

ତୁମେ ଅବା କେମିତି ଜାଣିବ
କୋକିଳା ପେଟର କେତେ ତାତି
ତୁମ କେନ୍ଦ୍ରବିନ୍ଦୁ ତ ତୁମ ପରିଧି ମଧ୍ୟରେ
ପରିଧି ବାହାରକୁ ବାହାରି ଆସ
ମୋତେ ପଚାର
ମୁଁ କାହିଁକି ରାଜରାସ୍ତାକୁ ଓହ୍ଲାଇ ଆସେ
ସ୍ଲୋଗାନ୍ ଦିଏ ହାତରେ ପ୍ଲାକାର୍ଡ଼ ଧରେ ।



# ରଙ୍ଗୋଲି

ପ୍ରଭୁ ତୁମ ରଙ୍ଗର ନାହିଁ ପଟାନ୍ତର
　　　　କେତେବେଳେ ତୁମେ ଚାରୁ ପ୍ରେମମୟ
　　　　କେତେବେଳେ ଭୀମ ଭୟଙ୍କର । ୧ ।

କୁସୁମେ କୁସୁମେ ମନଲୋଭା ଛବି
　　　　ବିହଙ୍ଗ ଡେଣାରେ ଚିତ୍ରିତ କବି
ଇନ୍ଦ୍ରଧନୁରେ ବର୍ଣ୍ଣିଳ ଛଟା
　　　　ସପ୍ତରଙ୍ଗର ସମ୍ଭାର । ୨ ।

ତପନ ରଶ୍ମିରେ ଶୁଭ୍ର ଝଲକ
　　　　ଅମା ଅନ୍ଧକାରେ କାଳିମାର ରୂପ
ମହାଗଗନର ନୀଳିମାରେ ତୁମେ
　　　　ସବୁଜ ବନାନୀ ସୁନ୍ଦର । ୩ ।

ପ୍ରଭୁ ତୁମ ରଙ୍ଗର ନାହିଁ ପଟାନ୍ତର
　　　　କେତେବେଳେ ତୁମେ ଚାରୁ ପ୍ରେମମୟ
　　　　କେତେବେଳେ ଭୀମ ଭୟଙ୍କର ।



# ଆଲୋକ ଦାଓ

କତୋବାର କ୍ରୀଷ୍ଟ ନାମ କରିଲାମ୍ ଭଜନ
କତୋବାର ଗଙ୍ଗା ଜଲେ କରିଲାମ ତର୍ପନ ।

ଗଲେ ନିଏ ଅସ୍ଥିମାଲ ପାତକ ଆମାର
ଘୂରେ ଆମି ଅନ୍ଧାରୁଆ ସବାଇ ଦୁଆର ।

ମୁକ୍ତେର ପଥ ପାଇନା ଗୋ ଆମି ଖୁଜି
ମରୁ ପଛେ ଦିଗ ଦିଏଛେ ଗୋ ଆମି ହାଜି ।

ତୃଷାତେ ଆକୁଲ କଲବଲ ହୟାଁ ପ୍ରାନ
କୁଥାଏ ଗୋ ତୁମି ଦାଓ ବାରେ ଦରଶନ ।

ଘୁମିଏ ପଡ଼ିଛ ତୁମି ଆଗୋ ମରୁ ନଦୀ
ଆମିଜେ ପାଇନା ତୁମାକେ କଖୋନ ଖୁଜି ।

ଆକୁଲତା କେନେ ଯାଗିଛି ଆମର ପ୍ରାନେ
କି ଜନେ ଗୋ ଆମି ଜାନିନା ତୁମାର ଜନେ ।

ଜାଗୁନ୍, ଜାଗୁନ୍ ମୁକ୍ତେର ପଥ ଫଲଗୁ ଧାରା
ଅନ୍ଧକାରେ ଆଲୋକ ଦାଓ ଆମି ଯେ ସର୍ବହରା ।



# ବାହୁଡ଼ା ଯାତ୍ରା

ହେ ପରମ ପିତା ଜଗତ କରତା
ତୁମରି କରୁଣା ବଳେ
ତୁମ ନନ୍ଦିଘୋଷ ଗଡ଼ି ଗଡ଼ି ଚାଲେ
ଅତୀତକୁ ଛାଡ଼ି ଦୂରେ ।
ତୁମରି ଆଦେଶ ତୁମ କୋଳ ଛାଡ଼ି
ସାଜିଛି ମୁଁ ମରୁଯାତ୍ରୀ
ଅସରନ୍ତି ପଥ ସରୁନାହିଁ ଜମା
ପାଦ ମୋ ଗଲାଣି ଥକି ।
ମରୁଝର ଭାବି ଯା ପଛେ ଧାଇଁଲି
ସିଏ ହେଲା ମରିଚୀକା
ମାୟା କୁହୁଡ଼ିର ପରଶରେ ଏଠି
ରକ୍ତିମ ଯବା ଫିକା ।
ତୁମ କୋଳ ଛାଡ଼ି ଆସିବା ଦିନରୁ
ଭ୍ରମୁଛି ମୁଁ ଅବିରତ
ଜନମ, ମରଣ, ମରଣ, ଜନମ
ଗୁଣ୍ଡିଚା ବାହୁଡ଼ା ଯାତ ।
ଚଉରାଶି ଲକ୍ଷ ଯାତ ରଚିବାକୁ
ନାହିଁ ମୋ ଶକତି ଆଉ
ସଥଳେ ଫେରାଇ ନିଅ ତୁମ କୋଳେ
ମୋ ଶେଷ ବାହୁଡ଼ା ହେଉ ।



# ମାଆ ଗୋ ମମତାମୟୀ

ମାଆ ଗୋ ମମତାମୟୀ
ଜନମ ଦେଇଛୁ, ଜୀବନ ଦେଇଛୁ
କରମ ଦେଇଛୁ ଭୁଞ୍ଜିବା ପାଇଁ
ମାଆ ଗୋ ମମତାମୟୀ...
ଆଖି ମେଲି ଦେଖେ ମୁଁ ଯାହା
ସବୁ ତୋର ଅଳିକ ମାୟା
ଧନ ଦାରା ସୁତ ସୋଦର ବାନ୍ଧବ
ଭଣ୍ଡି କିଆଁ ଦେଉ ଭୁଲାଇ ।
କହ କାହିଁ ନ ଦେଉ ଧରା
ତୁହି ମାତ ମୁକତି ଧାରା
ଲୁଚକାଳି ଖେଳୁ ନିତି ପାଶେ ଥାଇ
ତୋର ଖେଳ ଆଲୁଅ ଛାଇ ।
ହସ କାନ୍ଦ ଦୁଇଟି କୂଳ
ନିତି ଏଠି ସଞ୍ଜ ସକାଳ
ଆଲୁଅ ଅନ୍ଧାର ଜନମ ମରଣ
କହିଦିଅ ରଚିଲୁ କାହିଁ
କହ କେବେ ଆସିବୁ ଥରେ
ମୋ ଅନ୍ତର ଭଙ୍ଗା କୁଟିରେ
ପଦରଜ ଦେଇ ନେବୁ ଗୋ କୋଳେଇ
ଏ ଜନମୁଁ ମୁକତି ଦେଇ ।



# କୁଣିଆଁ

ତା' ଦୁଆରେ ମୁଁ କୁଣିଆଁ ନା
                    ମୋ ଦୁଆରେ ସେ କୁଣିଆଁ
ତା ପାଇଁ ମୁଁ ନସର ପସର
                    ସିଏ ମୋ ପାଇଁ ଛାନିଆଁ ।'

ବଇକୁଣ୍ଠ ଛାଡ଼ି ନୀଳାଚଳ ଧାମେ
                    କୁଣିଆ ସେ ଆଜି ମୋର
ଯେତେ ବୁଝାଇଲେ ବୁଝୁନାହିଁ ଜମା
                    ଅବୁଝା କୁଣିଆ ମୋର ।

ଅମାନିଆଁ ମୋର ଅବୁଝା କୁଣିଆଁ
                    ବୁଝୁନାହିଁ ଯମା କିଛି
ଓଲଟା କହୁଛି କୁଣିଆଁ ତୁ ମୋର
                    ଏତେ କାଳେ ମୁଁ ପାଇଛି ।

ଯମୁନା ଘାଟରୁ କଳସୀରେ ଜଳ
                    ଆଣିଛି ମୁଁ ତାହା ପାଇଁ
ନରେନ୍ଦ୍ରରେ ଜଳ ଭରି ସେ ଯତନେ
                    ବସିଛି ମୋ ବାଟ ଚାହିଁ ।

ଦାସିଆ ବାଡ଼ିରୁ ନଡ଼ିଆ ଆଣିଛି
                    ଶବରୀ ବାଡ଼ିରୁ କୋଳି
ସିଏତ ଚତୁରା ଆଗତୁରା ହୋଇ
                    ପଠାଇଲା ଭୋଗ ଥାଳି ।

ମୁଁ ଦେବା ଆଗରୁ ସିଏ ମୋତେ ଦିଏ
ଆଗକୁ ପାହୁଣ୍ଡେ ମାଡ଼ି
କୋଳ କରିବାକୁ ବଢ଼ାଇଲେ ହାତ
ନେଉଛି ମୋତେ ସେ ଭିଡ଼ି ।

ଦେବଦାସୀ ନାଚ ଦେଖାଇବି ତାକୁ
ଭାବିଲି ଯେବେ ମୁଁ ଦିନେ
ଦେଖାଇଲା ସିଏ ଶ୍ରୀଗୁଣ୍ଡିଚା ଯାତ
କେଜାଣି କି ଭାବି ମନେ ।

ସିଏତ ମନୁଆଁ ମୁଁ ଅମାନିଆଁ
କାହାକୁ ବୁଝିବ କିଏ
ପାରୁନି ମୁଁ ଜାଣି କିଏ ସେ କୁଣିଆଁ
କା ଦାଣ୍ଡ ଦୁଆର ମୁହେଁ ।



# ଝଙ୍କଡ଼ ବାସିନୀ

ଝଙ୍କଡ଼ ବାସିନୀ ମାତ ବୀଣାପାଣୀ
ନ କଲୁ ବାରେ ସୁଦୟା
ଆରତ ଜନକୁ ନିରତେ ନାସିଲୁ
ସରଜିଲୁ ଭବ ମାୟା ।

ଅଭୟ ମାଗିଲି ଅଭିଶାପ ଦେଲୁ
ସତେ କି ବା ତୋ ବିଚାର
ପୀୟୂଷ ଲୋଡ଼ି ମୁଁ ଗରଳ ପାଇଲି
ନ ହେଲା କରୁଣା ତୋର ।

ପଣତ ଘୋଡ଼େଇ ଅଭୟ ଦେଏ ମା
ଆରତେ ମୁଁ ଆଜି ଡାକେ
ନ ଶୁଣିଲେ ଡାକ କହମା କାହିଁକି
ତୋତେ ବା ଡାକିବେ ଲୋକେ ।

ଥରୁଟିଏ ମୋତେ ଦେଇ ଦରଶନ
ନିଜେ ରଖ ନିଜ ଟେକ
ମା' ହୋଇ ଯେବେ ନ ନେଲୁ କୋଳେଇ
ଧିକ ମୋ ଜୀବନ ଧିକ ।

ମାଡ଼ି ଆସେ କାଳ ରସନାହଲାଇ
କବଳିତ ମୁହିଁ ହୀନ
ମରୁଯାତ୍ରୀ ମୁହିଁ ଦାବାନଳେ ଦଗ୍ଧ
ଅବଶ ଶରୀର ମନ ।

ସରି ସରି ଆସେ ପ୍ରଦୀପୁ ତଇଳ
ବହେ ଝଞ୍ଜା ବାଆ ଘୋର
ଲିଭିଯିବ ସତେ କେଉଁ ପଲକରେ
ଜୀବନ ପ୍ରଦୀପ ମୋର ।

ଆଶାର କୁସୁମ ଆଶାରେ ରହିବ
ତୋର ଦରଶନ ପାଇଁ
ଜୀବନ ମୋ ପାଇଁ ମରଣ ସମାନ
ତୋ ବିନୁ ମୋ ଗତି ନାହିଁ ।

ପାଷାଣ ନିର୍ଦ୍ଦୟ ତା' ଠାରୁ ତୁ ବଳି
ସୃଜିଛୁ ଲୋ ମାୟା ନାଟ
ପାରୁନି ମୁଁ ଆଉ ଅଭିନୟ କରି
ହୁଏ ଖାଲି ଛଟପଟ ।

ପାଷାଣୀ ଲୋ ତୋର ଶାଣିତ କୃପାଣ
ଦେଏଲୋ ମୋ ବୁକେ ମାରି
ଯବନିକା ହେଉ ମୋର ଜନମର
ଏ ଜୀବନ ଯାଉ ସରି ।



# ଜ୍ଞାନାଞ୍ଜନ

ଅରୂପ ପ୍ରକଟି ରୂପ ନେଲା
ନିର୍ଗୁଣର ଧାରା ଗୁଣେ ପ୍ରକଟିଲା
କେଡ଼େ ଆଚମ୍ବିତ କଥା ହେଲା

କର୍ତ୍ତା ପ୍ରକଟିଲା କର୍ମ ହୋଇ
କାଳ କ୍ରିୟା ପଥେ ଗମନ କରନ୍ତେ
ଅବ୍ୟକ୍ତ ଯେ ଗଲା ବ୍ୟକ୍ତ ହୋଇ

ଶୂନ୍ୟ ଧରିଅଛି ସ୍ଥୂଳ ରୂପେ
ଚକ୍ର ପଥେ ପଥେ କରନ୍ତେ ଗମନ
ନିରାକାର ହେଲେ କାୟାଯୁକ୍ତ

ଶୂନ୍ୟରୁ ଝରୁଛି ଶୂନ୍ୟଝର
ଓଲଟ ବୃକ୍ଷ ଯେ ପାନ କରୁଅଛି
ବିସ୍ତାରିଛି କାୟା ବାରବାର

କର୍ତ୍ତା, କର୍ମ, କ୍ରିୟା ଏକାକାର
ଚଉଦ ବ୍ରହ୍ମାଣ୍ଡ ଆବୋରି ରହିଛି
ଆଦି ଅନ୍ତ ଯହିଁ ବୃତ୍ତାକାର

ଅଜ୍ଞାନୀ ଜ୍ଞାନକୁ ସ୍ଥୂଳ ମୁହିଁ
ତୃତୀୟ ନୟନ ଜ୍ଞାନୀ ଜ୍ଞାନ ବଳେ
ବିଜେ କରିଛନ୍ତି ଶୂନ୍ୟ ଦେହି ।



# ମହାଯାତ୍ରା ଆମ୍ଭର

ପଥହରା ବାଟୋଇ ମୁଁ ଅମା ଅନ୍ଧାରେ
ଭ୍ରମୁଅଛି ଏକା ଏକା ଅନେକ ଦୂରେ

ଯିଏ ସବୁଥିଲେ ଦିନେ ଆପଣା ହୋଇ
ଏକା ଛାଡ଼ି ଗଲେ ମୋତେ ନିର୍ଦ୍ଦୟ ହୋଇ ।

ଲିଭି ଲିଭି ଆସେ ମୋର ଜଳନ୍ତା ଜୁଇ
ସାହା ନାହିଁ ରାହାନାହିଁ ଯିବି ମୁଁ କାହିଁ ।

ବନ୍ଧୁ ହେ ! ଆସ ବାରେ ଏ ବେଳେ ଥରେ
କାହିଁ ଅଛ କେଉଁଠାରେ କେତେ ଯେ ଦୂରେ ।

ଭାସିଆସେ ତୁମର ସେ ମୂରଲୀ ସ୍ୱନ
ନାଚିଯାଏ ନୟନେ ମୋ ହଜିଲା ଧନ ।

ବିଜୁଳି ଜଳାଇ ବନ୍ଧୁ ଦେଖାଅ ପଥ
ପଥହରା ପଥିକ ମୁଁ ଜଗତନାଥ ।

ବନ୍ଧୁ ହେ ! ଆସ ବାରେ ଏବେଳ ଥରେ
କାହିଁ ଅଛ କେଉଁଠାରେ କେତେ ଯେ ଦୂରେ ।



# ଅନ୍ୱେଷଣ

ଅନ୍ୱେଷଣ ଅନ୍ୱେଷଣ ଖାଲି ଅନ୍ୱେଷଣ
କେଉଁ ଏକ ଅନନ୍ତ କାଳରୁ
ଅନନ୍ତ ସେ ଅନ୍ୱେଷଣ
ସୃଷ୍ଟିର ବହୁ ପୂର୍ବରୁ
ଅନେକ ପ୍ରଳୟ ପରେ ବି
ସେ ଅନ୍ୱେଷଣ ଲାଗି ରହିଥିବ
ପରିଧିର ଆଦି ଅନ୍ତ ଭଳି ଖୋଜା ଚାଲିଥିବ ।

ତୁମେ କାହିଁକି ବହୁଧା ହେଲ
ଆକର୍ଷଣ ଓ ବିକର୍ଷଣର କେନ୍ଦ୍ରବିନ୍ଦୁ ହେଲ
ନିଶ୍ୱାସେ ରଚିଲ ସୃଷ୍ଟି, ପ୍ରଶ୍ୱାସେ ପ୍ରଳୟ
କି ନିମନ୍ତେ ଗଢ଼ି ଭାଙ୍ଗ ପଲକେ ପଲକେ
ସୃଷ୍ଟିର ଶକତି ନାହିଁ ସ୍ରଷ୍ଟାକୁ ବୁଝିବ
ବୁଝିବାର ଶକ୍ତି ଥିଲେ ଅବୋଧ ନଥାନ୍ତ କିଛି ।

ଚତୁର୍ମୁଖ ବ୍ରହ୍ମା ହେଲେ ପକ୍ୱ କେଶ
ଲଭିବାକୁ ଶ୍ରୀପୟର ପଙ୍କଜ ଯୁଗଳ
କେତେ କେତେ ଅହୋରାତ୍ର ବିତିଛି ନିଷ୍ଫଳେ
ସାମ, ଋକ୍, ଯଜୁ, ଅଥର୍ବର ଝଙ୍କାର ମଧ୍ୟରେ
ରୁଦ୍ରଗଳା ଶୋଣିତରେ ଯାଇଅଛି ଭିଜି
ତଥାପି ସେ ଅନ୍ୱେଷଣ ଅନ୍ୱେଷଣ ଆଜି ।

କେଶ ବାସ ବିପର୍ଯ୍ୟସ୍ତ ଶ୍ମଶାନ ନିବାସ
ଅଙ୍ଗେ ବିଲୋପନ ଭସ୍ମ ଯୋଗମଗ୍ନ ଈଷ

ଜଟା ଯୁଟ ବିମଣ୍ଡନ ମୁଦ୍ରିତ ନୟନ
ଗଳେ ଆଭୂଷଣ ଫଣୀ ବୃଷଭ ବାହନ
ପ୍ରେତ ପିଶାଚ କିନ୍ନର ଅଙ୍ଗରକ୍ଷୀ ଗଣ
ସଦା ଜାଗ୍ରତ ଗଉରୀ ରମଣି ରତନ
ଓଁକାର ଧ୍ୱନିର ନାଦେ ଚଉଦ ଭୁବନ
ପ୍ରକମ୍ପିତ ଅନ୍ୱେଷଣ ମନ୍ତ୍ରର ସ୍ପନ୍ଦନ

ତଥାପି ସେ ଅନ୍ୱେଷଣ ଅନ୍ୱେଷଣ ଆଜି
ବିଚିତ୍ରକର୍ମା ବିଚିତ୍ର ମର୍ମେ ଅଛି ସୃଜି ।



# କର ମୋତେ ପୂର୍ଣ୍ଣ

ମୁଁ ଜାଣିନି ମୋ ଜୀବନ ଲକ୍ଷ୍ୟସ୍ଥଳ
ଖାଲି ଧାଉଁଛି ଧାଉଁଛି
କେବେ ପଥେ ଆସିଯାଏ ଉତ୍ତପ୍ତ ସାହାରା
କେବେ ଅବା ତଟିନୀର କୂଳ ।

x x x x x x x x

ଭୋକିଲା ପେଟକୁ ମୁଣ୍ଡଫଟା ଖରା
ତୃଷାର କଷଣ ସାଥେ
ଭଙ୍ଗାମନ ଅବଶ ଶରୀର
ଅଦୃଷ୍ଟର ନିଷ୍ଠୁର ଇସାରା ।

x x x x x x x x

ସ୍ଥିତପ୍ରଜ୍ଞ ଶୁଦ୍ଧ ସନାତନୀ ଆତ୍ମା
ବିଦ୍ରୋହୀ ବିକ୍ଷୁବ୍ଧ ଆଜି
ନ୍ୟାୟ ମଞ୍ଚେ ସଦର୍ପରେ ସୁବିଚାର ପାଇଁ
ନୁହଁଇ ସେ ନିରର୍ଥ ବଢ଼ିମା ।

x x x x x x x x

ହୋଇପାରେ ତୁମ ସୃଷ୍ଟି ଲୀଳାପୂର୍ଣ୍ଣ
ମୁଁ ଯେ ଦେହଧାରୀ ଜୀବ
ପରାଭବ ନୁହେଁ ମୋର ପ୍ରାପ୍ୟ ଜୀବନରେ
ଭାବରାଜ୍ୟେ କର ମୋତେ ପୂର୍ଣ୍ଣ ।



# ସତ୍ୟ

ଅନେକ ପ୍ରଶ୍ନର ବୋଝ ବୋହି ବୋହି
ନିର୍ଜନ ପଥରେ ଯୁବ ସନ୍ୟାସୀ ।
ଆପଣା ଗର୍ଭରେ ଧରିଥିବା ନିଜର ରକ୍ତ
ଆସନ୍ନ ପ୍ରସବା ଏକାକିନୀ ମା ମୋର ।
ଅସହାୟ ତାର ଦାରୁଣ ବ୍ୟଥା,
ଛୋଟିଆ ଉତ୍ତରଟିଏ, ଆଉ ଟିକିଏ ସାହଚର୍ଯ୍ୟ

x x x x x x x x

ହେ ଯୁବ ସନ୍ୟାସୀ କାହାନ୍ତି ତୁମର ସେ ଦିଗଦ୍ରଷ୍ଟା ଗୁରୁ ?
ପ୍ରଶ୍ନବାଣରେ ଜର୍ଜ୍ଜରିତ ହୋଇ ବ୍ୟଥିତ ହେଉଛ ।
ପ୍ରିୟତମକୁ ଛାଡ଼ି ତୁମେ ଆଜି ଏକାକିନୀ କାହିଁକି ମା ?

x x x x x x x x

ଅନ୍ତୁଡ଼ି ଶାଳର ନିଆଁ, ମା'ର ଉଷୁମ କୋଳ
ସବୁ ଛାଡ଼ି ଦେଇ ତୁମେ କାହିଁକି ଆଗକୁ ବଢ଼ିଲ
ତା'ଠାରୁ ନିରାପଦ ସ୍ଥାନ
ଏ ଦୁନିଆଁରେ ଆଉ ତୁମେ କେଉଁଠି ପାଇବ

x x x x x x x x

ଆଦ୍ୟରୁ ସୃଷ୍ଟିଟା ସେଇ ଆଦ୍ୟରେ ଥାଆନ୍ତା
ସବୁ ଭଲ ହୋଇଥାନ୍ତା, ସବୁ ଏକ ହୋଇ ଥାଆନ୍ତା
ବହୁଧା ହେବାର ଲୀଳା ଖେଳା ଭିତରେ
ତୁମେ ବୋଧରୁ ଅବୋଧ ହୋଇଗଲ

x x x x x x x x

ତୁମେ ପ୍ରେମମୟ ହେଲ
ନାରୀ ଆଉ ପୁରୁଷର କେନ୍ଦ୍ରବିନ୍ଦୁ ହେଲ
ଅନେକ ପ୍ରଶ୍ନର ଅନେକ ଉତ୍ତର ହେଲ
ତର୍କ ବିତର୍କ ଓ ଅନେକ ବ୍ୟକ୍ତରେ, ତୁମେ ଅବ୍ୟକ୍ତ ସାଜିଲ

x x x x x x x x

ହେ ଶାଶ୍ୱତ ଅବତାରୀ ,
ଅନେକ ଅବତାରର ଚିରନ୍ତନ ସତ୍ୟ
ଅସୁମାରୀ ବାସୁଦେବ, ବିଶ୍ୱ ବ୍ରହ୍ମମୟ
ହେ ଅନେକ ପ୍ରଳୟ, ଅନେକ ସୃଷ୍ଟି
ଯୁବ ସନ୍ୟାସୀର ଅଗଣିତ ପ୍ରଶ୍ନ
ଅବ୍ୟକ୍ତ ଗର୍ଭ ବେଦନାର ଚିରନ୍ତନ ସତ୍ୟ
ତୁମକୁ ଅନେକ ଅନେକ ସଂପ୍ରେମ ପ୍ରଣାମ



# ବିଶ୍ୱ ବାସୁଦେବମୟ

କିଏ କହେ ପ୍ରଭୁ ଦାରୁବ୍ରହ୍ମ ତୁମେ
କିଏ କହେ ତୁମେ ନିରାକାର

ତୁମ ଲୀଳା ଖେଳା ଦେଖି ମୁଁ ଚିନ୍ତଇ
ତୁମେ ଏ ବିଶ୍ୱର ଯାଦୁକର

ଶିଶୁର ଓଠରେ ଖିଲିଖିଲି ହସ
କୁସୁମେ କୁସୁମେ ମହମହ ବାସ

ମହାପ୍ରଳୟର ପ୍ରଭଞ୍ଜନ ତୁମେ
ବସନ୍ତର ମୃଦୁ ସମୀର

ତଟିନୀର ତୁମେ କୁଳୁକୁଳୁ ତାନ
ଗିରି ଉପତ୍ୟକା ଶାନ୍ତ ତପୋବନ

ଦିବସରେ ତୁମେ ଅଗ୍ନିର ସ୍ଫୁଲିଙ୍ଗ
ରଜନୀରେ ଜ୍ୟୋସ୍ନା ସମ୍ଭାର

କିଏ କହେ ପ୍ରଭୁ ଦାରୁବ୍ରହ୍ମ ତୁମେ
କିଏ କହେ ତୁମେ ନିରାକାର ।



# ଅଧୂରା ସ୍ୱପ୍ନ

ପଳ ପଳ ନିଜର ରକ୍ତଢାଳି
ନିଃଶେଷ ହେବାପରେ
ହରିସିଂ ବୁଝିପାରୁନି
ସେ କିମିତି ଅଲୋଡ଼ା ହେଲା ।
ତା ପୁଅ ଗୋପାଳସିଂ
ହାକିମ ହେବାପରେ
କାହିଁକି ଏମିତି ବଦଳିଗଲା
ଏ ମଣିଷ ଗୁଡ଼ା ସତେ
କାହିଁକି ବଦଳି ଯାଆନ୍ତି ?

X X X X X X X X

ଗୋପାଳ ସିଂ କାହିଁକି ଜନ୍ମୁଛନ୍ତି ?
ହରିସିଂ କାହିଁକି ଅଲୋଡ଼ା ହେଉଛନ୍ତି ?

X X X X X X X X

ସମୟର ଚକ ଘୁରୁଛି
ଆମେ ସମସ୍ତେ ବଦଳି ଯାଉଛୁ
ଭଲକରି ଆମେ ବୁଝିଗଲୁଣି
ଗୋପାଳସିଂ ଆଉ ବୋହିବନି
ବୃଦ୍ଧ ହରିସିଂର ବୋଝ ।
ଆମକୁ ମନେ ରଖିବାକୁ ହେବ,
ଗୋପାଳସିଂ ନିଶ୍ଚିତ ଦିନେ ହରିସଂ ହେବ
ବ୍ୟାସକବିଙ୍କର ଅଧୂରା ସ୍ୱପ୍ନ
ତୁମରି ହାତରେ ସାକାର ହେଉ
ହରିସିଂ ପାଇଁ ତୁମେ ତୋଳିଦିଅ
ବାନପ୍ରସ୍ଥର ଶାନ୍ତି ମନ୍ଦିରଟିଏ
ଅବଶେଷ ତାର କ୍ଲାନ୍ତ ଜୀବନ ପାଇଁ ।



# ନିବେଦନ

ଅନନ୍ତ ସତ୍ୟ କବିତା ପୁସ୍ତକ ଲବଧ୍ ଅର୍ଥରେ ଦୁଃସ୍ଥ ବୃଦ୍ଧ, ବୃଦ୍ଧାମାନଙ୍କ ନିମନ୍ତେ "ବାନପ୍ରସ୍ଥ ଶାନ୍ତି ମନ୍ଦିର" ପ୍ରତିଷ୍ଠାର ପରିକଳ୍ପନା ରହିଛି । ଉକ୍ତ ପବିତ୍ର କାର୍ଯ୍ୟରେ ମାନବ ଜାତିର ସହଯୋଗ ଏକାନ୍ତ କାମ୍ୟ । ପରିକଳ୍ପନା ସାକାର ହେଉ ଏହା ଈଶ୍ୱରଙ୍କ ନିକଟରେ ମୋର ନିବେଦନ ।


ପ୍ରକାଶକ

**ଚଣ୍ଡିପ୍ରସାଦ ଦାସ**

ପ୍ଲଟ୍ ନଂ. ୧୨୫/୩୫, ଲେନ୍ ନଂ.-୨

ଖଣ୍ଡଗିରିବିହାର, ପୋ.ଅ.- ଖଣ୍ଡଗିରି

ଭୁବନେଶ୍ୱର । ପିନ୍ - ୭୫୧ ୦୩୦

ଜିଲା : ଖୋର୍ଦ୍ଧା, ଓଡ଼ିଶା

